# ଭାଷା ଆଲୋଚନା

ଡକ୍ଟର ବିଜୟଲକ୍ଷ୍ମୀ ମହାନ୍ତି

ଓଡ଼ିଆ ଅଧ୍ୟାପକ, ପୂର୍ବାଞ୍ଚଳ ଭାଷା କେନ୍ଦ୍ର,

ଲକ୍ଷ୍ମୀସାଗର, ଭୁବନେଶ୍ୱର ୬

ମୁଦ୍ରାକର : କେଦାର ପ୍ରିଣ୍ଟିଂ ପ୍ରେସ, ୟୁନିଟ୍ ୯, ଭୁବନେଶ୍ୱର

୧୯୯୩

ମୂଲ୍ୟ, ୬୦ ଟଙ୍କା ମାତ୍ର

**BHĀSĀ ĀLOCHANĀ**

*(Discussions on Language)*

**by Dr. Bijaylaxmi Mohanty**

Lecturer in Oriya, Eastern Regional

Language Centre, Laxmisagar,

Bhubaneswar 6.

*Published by*, J M. Mohanty on behalf of

Bhubaneswar Institute of Literature,

1573, Madhuban Sarani,

Bhaktamadhu Nagar,

Bhubaneswar_751030

(Phone : 404289)

*Printed at*, Kedar Printing Press,

Unit 9, Bhubaneswar.

**1993**

Price, Rs. 60/-

# ସୂଚୀ

# ଭୂମିକା

'ଭାଷା ଆଲୋଚନା' ଓଡ଼ିଆ ଭାଷା ସମ୍ବନ୍ଧରେ ଆଲୋଚିତ କେତୋଟି ପ୍ରବନ୍ଧର ଏକ ସଂକଳନ । ସଂକଳିତ ପ୍ରବନ୍ଧ ଗୁଡ଼ିକ 'ଝଙ୍କାର' 'ସଂବର୍ତ୍ତିକ' ପ୍ରଭୃତି କେତୋଟି ପତ୍ର ପତ୍ରିକାରେ ବିଭିନ୍ନ ସମୟରେ ପ୍ରକାଶିତ ହୋଇ-ଥିଲା । ପୂର୍ବାଞ୍ଚଳ ଭାଷାକେନ୍ଦ୍ର, ଲକ୍ଷ୍ମୀସାଗରରେ, ଅଣଓଡ଼ିଆ ଶିକ୍ଷକମାନଙ୍କୁ ଓଡ଼ିଆ ଭାଷା ଅଧ୍ୟାପନା କରିବା ଅବସରରେ ଭାଷାର ଗଠନଗତ ବିଭିନ୍ନ ଅନାଲୋଚିତ ଦିଗ ମୋତେ ଆକୃଷ୍ଟ କରିଥିଲା ଏବଂ ସେଇ କାରଣରେ ଆମେ କହୁଥିବା ଓଡ଼ିଆ ଭାଷାର ଗଠନ ବିଶ୍ଳେଷଣ ପ୍ରତି ମୁଁ ଆଗ୍ରହୀ ହୋଇଥିଲି । ପୁଣି ଆମ ଓଡ଼ିଆ ବ୍ୟାକରଣ ବହିମାନଙ୍କରେ ବର୍ଣ୍ଣନାତ୍ମକ ପଦ୍ଧତିରେ ନିର୍ଭୁଲ ଭାଷାତଥ୍ୟ ପରିବେଷଣର ଅଭାବ ମଧ୍ୟ ଏ ଦିଗରେ ମତେ ଉତ୍ସାହିତ କରିଥିଲା । ଯାହା ଫଳରେ ଭାଷାର ବ୍ୟାକରଣ ଓ ଭାଷାତତ୍ତ୍ୱ ବିଷୟରେ ସାଧାରଣ ତଥ୍ୟ ସହିତ ନାସ୍ତିବାଚକ, ବାଚ୍ୟ, ଅନୁଜ୍ଞା, କ୍ରିୟାର କାଳ ପ୍ରଭୃତି କେତେକ ବିଭାଗକୁ ନେଇ ବିଶ୍ଳେଷଣ କରିବାକୁ ମୁଁ ପ୍ରବୃତ୍ତ ହୋଇଥିଲି । ଓଡ଼ିଆ ଭାଷାର ବହୁ ଅନାଲୋଚିତ ଓ ଅନାବିଷ୍କୃତ ବିଭାଗ ଭିତରୁ ଏଗୁଡ଼ିକ ମାତ୍ର କେତୋଟି । ଏଇ ବିଷୟ ଗୁଡ଼ିକୁ ଆଲୋଚନା କରିବା ବେଳେ ମୁଁ ପ୍ରଚଳିତ ଓଡ଼ିଆ ଭାଷାର ବ୍ୟାବହାରିକ ପ୍ରୟୋଗକୁ ବିଷୟବସ୍ତୁ ନେଇଛି । ଏଣୁ ପ୍ରଚଳିତ ଓଡ଼ିଆ ଭାଷାର କେତେକ ବିଭାଗର ଗଠନ ପଦ୍ଧତି ସମ୍ବନ୍ଧରେ ଏହି ପ୍ରବନ୍ଧ ଗୁଡ଼ିକରେ ସମ୍ୟକ୍ ସୂଚନା ରହିଛି । ଏହାଛଡ଼ା ଦ୍ୱିତୀୟ ଭାଷା ଭାବରେ ଓଡ଼ିଆ ଶିକ୍ଷା କରିବା ସମ୍ପର୍କରେ ମଧ୍ୟ କେତୋଟି ପ୍ରବନ୍ଧକୁ ସଙ୍କଳନଟିରେ ଅନ୍ତର୍ଭୁକ୍ତ କରଯାଇଛି ।

ଓଡ଼ିଆ ଭାଷାକୁ ବିଷୟ ବସ୍ତୁ କରି ଓଡ଼ିଆରେ ଗବେଷଣାମୂଳକ ଆଲୋଚନା ଗ୍ରନ୍ଥ ଖୁବ୍ ବେଶି ନାହିଁ । ସେଇ ପରିପ୍ରେକ୍ଷୀରେ 'ଭାଷା ଆଲୋଚନା'ରେ ମୋର ଏଇ କ୍ଷୁଦ୍ର ପ୍ରୟାସ ପାଠକମାନଙ୍କର ଆଦର ଲାଭ କଲେ ମୁଁ ନିଜକୁ ଧନ୍ୟ ମନେ କରିବି ।

**ବିଜୟଲକ୍ଷ୍ମୀ ମହାନ୍ତି**

# ଭାଷା ଓ ବ୍ୟାକରଣ

ଆଜିକୁ ହଜାର ହଜାର ବର୍ଷ ଧରି ମଣିଷ ଭାଷାକୁ ବ୍ୟବହାର କରି ଆସୁଛି । ମନ ଭିତରେ ଭାବିବାଠାରୁ ଆରମ୍ଭ କରି ମନର ଭାବନାକୁ ଅନ୍ୟ ଆଗରେ ପ୍ରକାଶ କରି ସ୍ପଷ୍ଟ କରିବା ପର୍ଯ୍ୟନ୍ତ ପ୍ରତ୍ୟେକ ଅବସ୍ଥାରେ ଭାଷା ମଣିଷର ଏକ ପ୍ରଧାନ ଅବଲମ୍ବନ । ଏଣୁ ଭାବ ବିନିମୟର ସଫଳ ମାଧ୍ୟମ ଭାବରେ ଭାଷା ହିଁ ମଣିଷ ଜୀବନରେ ବିଶେଷ ଭୂମିକା ଗ୍ରହଣ କରିଥାଏ ।

ମଣିଷ ଉପରେ ମଣିଷର ଭାଷା ପ୍ରୟୋଗର ଅଦ୍ଭୁତ ପ୍ରଭାବ ରହିଛି ଏବଂ ଭାଷା ହିଁ ମଣିଷକୁ ଅନ୍ୟାନ୍ୟ ଜୀବଜନ୍ତୁ ତଥା ଇତର ପ୍ରାଣୀମାନଙ୍କ-ଠାରୁ ପୃଥକ କରିଥାଏ । ନିଜ ମନର ଭାବକୁ ଓ ଅନୁଭବକୁ ମଣିଷ ଯେତେ ସ୍ପଷ୍ଟ ଓ ପ୍ରାଞ୍ଜଳ ଭାବରେ ଭାଷାରେ ପ୍ରକାଶ କରିପାରେ, ଅନ୍ୟ ଜୀବଜନ୍ତୁ-ମାନେ ନିଜକୁ ସେପରି ସ୍ପଷ୍ଟ ବା ଖୋଲ୍ ଖୋଲି ଭାବରେ ପ୍ରକାଶ କରି ପାରନ୍ତି ନାହିଁ । ସେଥିପାଇଁ ସେମାନଙ୍କର ଭାବ ପ୍ରକାଶର କେତୋଟି ମାତ୍ର ସୀମିତ ମାଧ୍ୟମ ରହିଥିବାର ଆମେ ଲକ୍ଷ୍ୟ କରିଥାଉ ।

ଇତର ପ୍ରାଣୀମାନେ ନିଜର ଆବଶ୍ୟକତା ପୂରଣ ନିମନ୍ତେ ଯେଉଁ କେତେକ ସୀମିତ ମାଧ୍ୟମ ଅବଲମ୍ବନ କରନ୍ତି ସେହି ମାଧ୍ୟମ ଗୁଡ଼ିକର କେବେ ହେଲେ ବିକାଶ ହେଉଥିବା ଦେଖାଯାଏ ନାହିଁ । ଖାଦ୍ୟ ଅନ୍ୱେଷଣ, ବିପଦ ସୂଚନା, ଶାରୀରିକ ଆବେଗ ପ୍ରଭୃତି କୀଟ ପତଙ୍ଗ ବା ପଶୁପକ୍ଷୀଙ୍କ ଭିତରେ ଭାବ ଆଦାନ ପ୍ରଦାନର ଚିରନ୍ତନ ରୀତି ଦେଖିବାକୁ ମିଳେ । ଏହି ସବୁ ସୂଚନା ଦେବାପାଇଁ ସେମାନେ କେତେକ ଅସ୍ପଷ୍ଟ ଧ୍ୱନି ପ୍ରକାଶ କରନ୍ତି, କେତେକ ନାଚ ବା ଅଙ୍ଗଭଙ୍ଗୀ ଜନିତ ସଙ୍କେତ ପ୍ରଦର୍ଶନ କରିଥାନ୍ତି । କିନ୍ତୁ ମଣିଷର ଭାଷା ଇତର ପ୍ରାଣୀମାନଙ୍କର ଡାକ ବା ସଙ୍କେତ ପରି ଅସ୍ପଷ୍ଟ ବା ସୀମିତ ନ ହୋଇ ଆବଶ୍ୟକ ସ୍ଥଳେ ଏକାଧିକ ଅର୍ଥ ପ୍ରକାଶ କରିପାରେ । ବହୁ ଜଟିଳ ଭାବକୁ ସୂକ୍ଷ୍ମ ଭାବରେ ମଧ୍ୟ ପ୍ରକାଶ କରିବାକୁ ସକ୍ଷମ ହୋଇଥାଏ । ମଣିଷର ଅନୁଭବ କରି ପାରିବାର ଶକ୍ତି ଯେପରି ପ୍ରବଳ, ଅନୁଭବରୁ ପ୍ରସୂତ ଭାବ ପ୍ରକାଶର ମାଧ୍ୟମ ବି ସେହିପରି ସୂକ୍ଷ୍ମ ଓ ଉନ୍ନତ । ମଣିଷର ଭାଷାର ଯେପରି ସୃଷ୍ଟି, ବୃଦ୍ଧି ଓ ଅଭିବୃଦ୍ଧି ରହିଛି

ସେହିପରି ତାର କ୍ଷୟ, ବିଲୋପ ଓ ଅପପ୍ରୟୋଗ ରହିଛି । ଭାଷା ବ୍ୟବହାରରେ ଥିଲେ ତାର ଯେପରି ବିକାଶ ହୁଏ, ପରିବର୍ତ୍ତନ ହୁଏ, ସେହିପରି ତାହା ବ୍ୟବହାରରେ ନ ଥିଲେ କାଳକ୍ରମେ କ୍ଷୟ ହୁଏ, ଲୋପ ପାଏ ବା ମୃତ ଭାଷାରେ ପରିଣତ ହୁଏ । ମଣିଷର ଭାଷାର ସର୍ବଦା ଧ୍ୱନି ଓ ଶବ୍ଦ ଗଠନ କ୍ରମରେ ଦୁଇଟି ଗଠନ ସ୍ତର ରହିଥାଏ ଯାହାକି ଇତର ପ୍ରାଣୀମାନଙ୍କର ଧ୍ୱନି ସଙ୍କେତରେ ନ ଥାଏ । ଭାଷାର ଏହି ଦୁଇ ଗଠନ ସ୍ତରକୁ ସି. ଏଫ. ହକେଟ 'ଯୁଗ୍ମ ଗଠନ ସ୍ତର' (duality of patterns) ବୋଲି କହିଛନ୍ତି ।

ମଣିଷର ଅନୁଭବ ପ୍ରସୂତ ଭାବକୁ ପ୍ରକାଶ କରିବା ପାଇଁ ଭାଷା ଏକ ସହଜ ମାଧ୍ୟମ ପରି ମନେ ହେଉଥିଲେ ମଧ୍ୟ ତାର ଗଠନ ପଦ୍ଧତି ଅତ୍ୟନ୍ତ ଜଟିଳ । କାରଣ ଆମେ ଲକ୍ଷ୍ୟ କରିଥାଉ ଯେ ଗୋଟିଏ ନିର୍ଦ୍ଦିଷ୍ଟ ଭାଷାକୁ ବ୍ୟବହାର କରୁଥିବା ଲୋକେ ସେଇ ଭାଷାରେ ନିଜକୁ ଯେତେ ସହଜରେ ଆଉ ସୁବିଧାରେ ପ୍ରକାଶ କରି ପାରନ୍ତି, ସେଇ ଭାଷାକୁ ବିଷୟବସ୍ତୁ କରି ବିଶ୍ଳେଷଣ କରିବାକୁ ଗଲେ ତାହା ସେତେ ବେଶି ଜଟିଳ ଓ କଷ୍ଟସାଧ୍ୟ ମନେହୁଏ । ଆମେ ଦେଖୁ ଯେ ଲୋକେ ଭାଷା ସାହାଯ୍ୟରେ ଭାବ ପ୍ରକାଶ କଲାବେଳେ ଠିକ୍ ଜାଗାରେ ଠିକ୍ କଥାଟି କହି ନ ପାରିଲେ ବେଳେ ବେଳେ ଯେପରି ନିଜକୁ ସ୍ପଷ୍ଟ କରି ପାରନ୍ତି ନାହିଁ, ହାସ୍ୟାସ୍ପଦ ହୁଅନ୍ତି, ବା ଅନେକ କଥା ଅକୁହା ବା ଅଧାକୁହା ରହିଯାଏ ସେହିପରି ଅନେକ ସମୟରେ ଏଥିପାଇଁ ଭୁଲ ବୁଝାମଣା ହୋଇ ନାନା ବିପଦର ସମ୍ମୁଖୀନ ହେବାକୁ ପଡ଼େ । ଇଏ ତ ଭାଷା ବ୍ୟବହାରରେ ଏକ ସାମାଜିକ ଚଳଣିଗତ ଅସୁବିଧା, କିନ୍ତୁ ଅନ୍ୟ ଅସୁବିଧା ହେଉଛି, ଯେତେବେଳେ ଜଣେ ଠିକ କଥାଟିଏ ବା ଠିକ ବାକ୍ୟଟିଏ କହି ପାରୁନି, ଯେମିତି 'ମୁଁ ଘରେ ନଥିଲି' ନ କହି, କହି ଦେଉଛି 'ନ ଘରେ ମୁଁ ଥିଲି' ବା 'ମୁଁ ଘରେ ଥିଲୁ ନ', ସେତେବେଳେ ଆମେ ଭାଷାକୁ ଠିକ୍ ଭାବରେ କହି ପାରୁଥିବା ଲୋକେ ହସି ପକାଉଛୁ ଓ ସେପରି କଥା କହୁଥିବା ଲୋକଟି ଅପ୍ରସ୍ତୁତ ହୋଇ ଯାଉଛି । କିନ୍ତୁ ଏପରି କାହିଁକି ହୁଏ ? ଭାଷାରେ କେଉଁଟି କହିବା ଠିକଆଉ କେଉଁଟି କହିବା ଭୁଲ, ଏହାକୁ କିପରିବା ସ୍ଥିର କରଯାଏ ? ଭାଷାର ନିର୍ମାଣ ପଦ୍ଧତି କିପରି ? ଭାଷା ନିର୍ମାଣରେ ବ୍ୟବହୃତ ହେଉଥିବା ବିଭିନ୍ନ ଅଂଶ ବା ଉପାଦାନ ଗୁଡ଼କର ବିଶେଷତ୍ୱ ବା କ'ଣ ? ଭାଷାର ଗଠନ ବା ନିର୍ମାଣ ପଦ୍ଧତିକୁ କିପରି ସହଜ ଓ ସୁବିଧାରେ ବୁଝାଇ ବର୍ଣ୍ଣନା କରଯାଇ ପାରିବ ?

ଏହି ସବୁ ବିଷୟ ଏବଂ ଭାଷା ସମ୍ପର୍କୀୟ ସମସ୍ତ ତଥ୍ୟର ପର୍ଯ୍ୟାଲୋଚନା ପାଇଁ ଭାଷାର ବିଜ୍ଞାନସମ୍ମତ ପ୍ରାମାଣିକ ବିଶ୍ଳେଷଣ ଆବଶ୍ୟକ । ପ୍ରାମାଣିକ ଭାବରେ ବୈଜ୍ଞାନିକ ପଦ୍ଧତିରେ ଭାଷାର ବିଶ୍ଳେଷଣର ଅନ୍ୟ ନାମ ବ୍ୟାକରଣ ବା ଭାଷାବିଜ୍ଞାନ ।

ଭାଷା ବିଷୟରେ ବୈଜ୍ଞାନିକ ଦୃଷ୍ଟିକୋଣରୁ ଆଲୋଚନା କରିବା ପାଇଁ ଊନବିଂଶ ଶତାବ୍ଦୀରେ ପାଶ୍ଚାତ୍ୟ ଭାଷାବିତ୍‌ମାନେ ସଚେତନ ହେବା ଫଳରେ ପୃଥିବୀର ବିଭିନ୍ନ ଅଞ୍ଚଳରେ ବିଭିନ୍ନ ଭାଷାରେ ଲୋକ ପ୍ରଚଳିତ କେତେକ ପୂର୍ବ ଧାରଣା ସମ୍ବନ୍ଧରେ ଭାଷାବିତ୍‌ମାନେ ଅବଗତ ହେଲେ ଓ ଫଳରେ ଭାଷାର ସୃଷ୍ଟି ଓ ଉତ୍ପତ୍ତି ଏବଂ ଭାଷାମାନଙ୍କର ଶୃଙ୍ଖଳିତ ତୁଳନା ମୂଳକ କାଳାନୁକ୍ରମିକ ଆଲୋଚନା ସମ୍ବନ୍ଧରେ ସୂତ୍ରପାତ ହେଲା ।

ଭାଷା କେବେ ସୃଷ୍ଟି ହେଲା ସେ ପ୍ରଶ୍ନ ଆଜି ବି ଅସମାହିତ ହୋଇ ରହିଛି ଏବଂ ଭାଷା ସୃଷ୍ଟି ସମ୍ବନ୍ଧରେ ଠିକ ପ୍ରମାଣ ନ ମିଳିଲେ ମଧ୍ୟ ମଣିଷ କଥାକୁହା ପ୍ରାଣୀ ଭାବରେ ହିଁ ପରିଚିତ । ସେଥିପାଇଁ ପାଶ୍ଚାତ୍ୟ ଭାଷାବିତ୍ ଫ୍ରାଙ୍କ ପାମର କହନ୍ତି, 'ମଣିଷ କେବଳ କଥାକୁହା ପ୍ରାଣୀ ନୁହେଁ, ସେ ମଧ୍ୟ ବ୍ୟାକରଣ କୁହା ପ୍ରାଣୀ' । ମଣିଷ କଥାରେ ବ୍ୟବହାର କରୁଥିବା ଭାଷା ଏବଂ ସେ ଭାଷାର ବ୍ୟାକରଣ ଯୋଗୁ, ଅନ୍ୟାନ୍ୟ ଇତର ପ୍ରାଣୀମାନଙ୍କ ଦ୍ୱାରା ପ୍ରକାଶିତ ଧ୍ୱନି ସମୂହଠାରୁ ତାର ଭାଷା ଉନ୍ନତ ଓ ବିକଶିତ ।

ଆମେ ଲକ୍ଷ୍ୟ କରିଥାଉ ଯେ ଏ ପୃଥିବୀରେ ଅସଂଖ୍ୟ ଭାଷାର ପ୍ରଚଳନ ଅଛି ଓ ଗୋଟିଏ ଭାଷାର ଲୋକ ଅନ୍ୟ ଗୋଟିଏ ଅଜଣା ଭାଷା ବୁଝିପାରେ ନାହିଁ ବା କହିପାରେ ନାହିଁ । ନିଜ ଅଭିଜ୍ଞତାରୁ ମଧ୍ୟ ଆମେ ଜାଣିପାରୁ ଯେ ଗୋଟିଏ ଭାଷାର ଲୋକ ଅନ୍ୟ ଅଜଣା ଭାଷାଟିଏ ଜାଣିବାକୁ ହେଲେ ବା ଶିଖିବାକୁ ହେଲେ ତାକୁ ବହୁ ଆୟାସ କରିବାକୁ ପଡ଼ଥାଏ । ଏହାର କାରଣ ପ୍ରତ୍ୟେକ ଭାଷାର ସ୍ୱତନ୍ତ୍ର ପ୍ରୟୋଗ ବିଧି ବା ବ୍ୟାକରଣ ଥାଏ ବୋଲି ଏପରି ଘଟିଥାଏ । କିନ୍ତୁ ପ୍ରତ୍ୟେକ ଭାଷାର ସ୍ୱତନ୍ତ୍ର ପ୍ରୟୋଗ ବିଧି ରହିବା କାହିଁକି ଆବଶ୍ୟକ ହୋଇଥାଏ ସେ ବିଷୟରେ ଫ୍ରାଙ୍କ ପାମର କେତେକ କାରଣ ଦର୍ଶାଇଛନ୍ତି ।

ଦେଖାଯାଇଥାଏ ଯେ ପ୍ରତ୍ୟେକ ଭାଷାର ଗଠନ ପଦ୍ଧତି ସ୍ୱତନ୍ତ୍ର ଏବଂ ଏ ଗଠନ ପଦ୍ଧତି ସରଳ ନ ହୋଇ ଜଟିଳ ତଥା ନିର୍ଦ୍ଦିଷ୍ଟ ଭାଷାଗତ ହୋଇଥିବାରୁ ଗୋଟିଏ ଭାଷାରୁ ଅନ୍ୟ ଗୋଟିଏ ଭାଷାକୁ ଅନୁବାଦ କରିବା ସମୟରେ ଅନୁବାଦ ସମ୍ପୂର୍ଣ୍ଣ ସମାନ ଭାବରେ ବା ସମାନ ଅନୁପାତରେ ହୋଇପାରେ ନାହିଁ । ତେଣୁ ଆକ୍ଷରିକ ଭାବରେ ସଫଳ ଭାଷାନ୍ତର କରିବା ସମ୍ଭବପର ହୁଏ ନାହିଁ । ଏପରିକି କମ୍ପ୍ୟୁଟର ବା ଅନ୍ୟ କୌଣସି ଅନୁବାଦ ଯନ୍ତ୍ର ସାହାଯ୍ୟରେ ମଧ୍ୟ ସମ୍ପୂର୍ଣ୍ଣ ସଫଳ ଭାଷାନ୍ତର କରିବା ସମ୍ଭବପର ହୋଇପାରି ନାହିଁ । କମ୍ପ୍ୟୁଟର ବା ମେସିନ ଅନୁବାଦର ଅସଫଳତା ଦର୍ଶାଇବା ପାଇଁ ପାମର ଏକ ସୁନ୍ଦର ଉଦାହରଣ ଦେଇଛନ୍ତି । ଗୋଟିଏ କମ୍ପ୍ୟୁଟରକୁ out of sight, out of mind ଅନୁବାଦ କରିବାକୁ ଦିଆଯିବାରୁ କମ୍ପ୍ୟୁଟର ଏହାର ଅର୍ଥ କଲା invisible idiot, ଯାହାକି ସେହି ବାକ୍ୟାଂଶର ଆଦୌ ଅର୍ଥ ନୁହେଁ । ସେହିପରି ଯଦି ଓଡ଼ିଆରେ ଥିବା କଥା 'ଆଖି ନାହିଁ, କାନ ନାହିଁ, ବାଜିଗଲେ ଦୋଷ ନାହିଁ'କୁ କୌଣସି କମ୍ପ୍ୟୁଟରକୁ ଅର୍ଥ କରିବାକୁ ଦିଆଯିବ ତେବେ ସେ ମଧ୍ୟ କହି ପାରେ ଯେ ଲୋକଟି ଅନ୍ଧ ଓ କାଲା । କିନ୍ତୁ ଏ କଥାର ଅର୍ଥ ଯେ କେତେ ବ୍ୟାପକ ତାହା ପ୍ରତ୍ୟେକ ଓଡ଼ିଆ ଭାଷୀ ବୁଝିପାରେ । ପାମର କହନ୍ତି, ଏପରି ଭୁଲ କରିବା ଅବଶ୍ୟ କମ୍ପ୍ୟୁଟରର ଦୋଷ ନୁହେଁ, ଏହାର କାରଣ ହେଉଛି ପ୍ରତ୍ୟେକ ଭାଷାର ଜଟିଳ ଓ ସୁସଙ୍ଗଠିତ ଗଠନ ପଦ୍ଧତି । ଗୋଟିଏ ପଦ୍ଧତିରୁ ଆଉ ଗୋଟିଏ ପଦ୍ଧତିକୁ ମେସିନ୍ ସାହାଯ୍ୟରେ ରୂପାନ୍ତର ହୋଇ ନ ପାରିବାରୁ ଭାଷାର ଏପରି ଅପକ୍ଷୟ ହୋଇଥାଏ ।

ଭାଷାର ସ୍ୱତନ୍ତ୍ର ଗଠନ ପଦ୍ଧତି ଥିବା କଥା ଅନ୍ୟ ଅଭିଜ୍ଞତାରୁ ମଧ୍ୟ ଜଣାପଡ଼େ । ଗୋଟିଏ ଭାଷାର ଲୋକ ଅନ୍ୟ ଏକ ନୂଆ ଭାଷାରେ ନିଜକୁ ଯେପରି ପ୍ରକାଶ କରିପାରେ ନାହିଁ ସେହିପରି ଅନ୍ୟ ଭାଷାର କଥାଟିଏକୁ ବି ନିଜ ଭାଷାରେ ପ୍ରକାଶ କରିବା ପାଇଁ ତାକୁ ବେଶ୍ କିଛି ସମୟ ଭାବିବାକୁ ପଡ଼ଥାଏ । ଏଥିରୁ ଏହା ହିଁ ସ୍ପଷ୍ଟ ହୁଏ ଯେ ପ୍ରତି ଭାଷାର ଗଠନ ପଦ୍ଧତି ଓ ପ୍ରୟୋଗ ବିଧି ଅଲଗା ଏବଂ ଭାଷାଗଠନର ସ୍ୱତନ୍ତ୍ର ଜଟିଳ ପଦ୍ଧତିଗୁଡ଼ିକୁ ବୋଧଗମ୍ୟ କରାଇବାକୁ ଭାଷାର ବ୍ୟାକରଣର ପ୍ରୟୋଜନ ହୁଏ ଏବଂ ଏଗୁଡ଼ିକୁ ଭାଷାର ବ୍ୟାକରଣକାରମାନେ ହିଁ ରଚନା କରିଥାନ୍ତି ।

ଭଷାର ଚିର ନୂତନ ସୃଷ୍ଟିକାରୀ କ୍ଷମତା ରହିଛି । ପ୍ରତି ମୂହୂର୍ତ୍ତରେ କେବେ ବି ଶୁଣି ନ ଥିବା ବା ବ୍ୟବହାର କରି ନ ଥିବା ଅସଂଖ୍ୟ ବାକ୍ୟ କଥା ଆକାରରେ ଆମେ ନିଜର ଆବଶ୍ୟକତା ଅନୁଯାରେ ତିଆରି କରିପାରୁ ଓ ନିଜକୁ ପ୍ରକାଶ କରିବାକୁ ବ୍ୟବହାର କରିପାରୁ । କିନ୍ତୁ ଏହି ନୂଆ ବ୍ୟବହାର କରଯାଉଥିବା କଥାକୁ ସେହି ଭାଷାର ଶୁଣୁଥିବା ଲୋକେ ଠିକ୍ ବୁଝି ପାରନ୍ତି । ପ୍ରତି ଭାଷାରେ ପ୍ରତି ମୂହୂର୍ତ୍ତରେ ଅସଂଖ୍ୟ ନୂଆ ବାକ୍ୟ ତିଆରି କରଯାଇ ପାରିବାର ଯେଉଁ କ୍ଷମତା ରହିଛି ତାହାର ଆଲୋଚନା ପାଇଁ ମଧ୍ୟ ବ୍ୟାକରଣର ଆବଶ୍ୟକତା ରହିଛି ।

ସାଧାରଣତଃ ଲକ୍ଷ୍ୟ କରଯାଇଥାଏ ଯେ କୌଣସି ବିଦେଶୀ ଲୋକକୁ ଭାଷା-ଶିକ୍ଷା ଦେବା ସମୟରେ ଭାଷା-ଶିକ୍ଷା ଦେଉଥିବା ବ୍ୟକ୍ତିଙ୍କର ଶିକ୍ଷା ଦେଉଥିବା ଭାଷା ସମ୍ବନ୍ଧରେ ସବିଶେଷ ଜ୍ଞାନ ରହିବା ଆବଶ୍ୟକ ହୋଇଥାଏ । ଭାଷା ସମ୍ବନ୍ଧରେ ସବିଶେଷ ଜ୍ଞାନ କହିଲେ କେବଳ ଭାଷାକୁ ଭଲ ଭାବରେ କହି ଜାଣିବା ଯଥେଷ୍ଟ ନୁହଁ, ସେହି ଭାଷାର ଗଠନ ପଦ୍ଧତି ଏବଂ ପ୍ରୟୋଗ ବିଧି ସମ୍ବନ୍ଧୀୟ ଜ୍ଞାନ ତଥା ସେ ଭାଷାକୁ ଶୃଙ୍ଖଳିତ ବୈଜ୍ଞାନିକ ପଦ୍ଧତିରେ ବର୍ଣ୍ଣନା କରି ପାରିବାର ଦକ୍ଷତା ଅର୍ଥାତ୍ ବ୍ୟକରଣ ଜ୍ଞାନ ରହିବା ଆବଶ୍ୟକ ହୁଏ । ଏ ବିଷୟ ଉଲ୍ଲେଖ କରି ଏଡ ରୁଲେଟ, ସୋଲ ସାପୋର୍ଟାଙ୍କ ମତ ଉଦ୍ଧାର କରି ଲେଖିଛନ୍ତି, ବିଦେଶୀ ଭାଷା ଶିକ୍ଷା କ୍ଷେତ୍ରରେ ଭାଷା ବିଜ୍ଞାନ ପ୍ରୟୋଗର ମୂଳ ଉଦ୍ଦେଶ୍ୟ ହେଉଛି ବୈଜ୍ଞାନିକ ପଦ୍ଧତିରେ ରଚିତ ଭାଷାର ବ୍ୟାକରଣକୁ ଭାଷା-ଶିକ୍ଷା-ବ୍ୟାକରଣରେ ପରିଣତ କରିବା । ଏଣୁ ଭାଷା-ଶିକ୍ଷା ଉଦ୍ଦେଶ୍ୟରେ ଭାଷା ଗଠନ ସମ୍ବନ୍ଧୀୟ ଜ୍ଞାନ ହାସଲ କରିବା ପାଇଁ ଭାଷାର ବ୍ୟାକରଣ ରଚନାର ଆବଶ୍ୟକତା ଅଛି ।

ଭାଷାର ଗଠନ ପଦ୍ଧତି ଜଟିଳ ଏବଂ ଏହା କେତେ ପରିମାଣରେ ଜଟିଳ ତାହା ଜଣାପଡ଼େ ଯେତେବେଳେ ଜଣେ ସାଧାରଣ ବ୍ୟକ୍ତି ପ୍ରାପ୍ତ ବୟସରେ ସଚେତନ ଭାବରେ ନିଜ ମାତୃଭାଷା ଛଡ଼ା ଅନ୍ୟ ଏକ ନୂଆ ଭାଷା ଶିଖିବାକୁ ଇଚ୍ଛା କରେ । କାରଣ ନୂଆ ଭାଷାକୁ ସମ୍ପୂର୍ଣ୍ଣ ଭାବରେ ଆୟତ କରିବା ତା ପକ୍ଷରେ ଅତି କଷ୍ଟସାଧ୍ୟ ମନେ ହୁଏ । ଅଥଚ ନିଜ ମାତୃଭାଷାକୁ ନିଜ ଶିଶୁ ଅବସ୍ଥାରୁ ଆୟତ କରି ସେ କିପରି ଏତେ ସହଜ ଏବଂ ସ୍ୱାଭାବିକ ଭାବରେ ବ୍ୟବହାର କରିପାରେ ତାହା ପ୍ରକୃତରେ ମଣିଷ ପାଇଁ ଏକ ଅତି ଆଶ୍ଚର୍ଯ୍ୟର ବିଷୟ ହୋଇ ଆଜି ବି ରହିଛି ।

।। ୬ ।।

ପ୍ରତି ଲିଖିତ ଭାଷାର ନିର୍ଣ୍ଣିତ ଭାବରେ ଏକ ଲିଖିତ ଶୁଦ୍ଧ ବ୍ୟାକରଣ ରହିବା ଉଚିତ ମନେକରି ବ୍ୟାକରଣକାରମାନେ କେତେକ ଭ୍ରମପୂର୍ଣ୍ଣ ଧାରଣା କରିଥାନ୍ତି । କେତେକ ବ୍ୟାକରଣକାର ମନେ କରନ୍ତି ଭାଷା କହିଲେ କେବଳ ଲିଖିତ ଭାଷାକୁ ବୁଝାଏ । କାରଣ ଲିଖିତ ଭାଷାର ହିଁ ନିର୍ଭୁଲ ବ୍ୟାକରଣ ଉପସ୍ଥାପିତ କରିବା ସମ୍ଭବ ଏବଂ ସେଥିପାଇଁ କେବଳ ଲିଖିତ ଭାଷାର ହିଁ ବ୍ୟାକରଣ ରହିବା ସମ୍ଭବ । ଏମାନେ କଥିତ ଭାଷାକୁ ଲିଖିତ ଭାଷାର ଅଶୁଦ୍ଧ ବା ନିକୃଷ୍ଟ ରୂପ ମନେ କରି କଥିତ ଭାଷାର ବ୍ୟାକରଣ ସମ୍ଭବ ନୁହେଁ ବୋଲି ମତ ଦିଅନ୍ତି । ଏଣୁ ଯେଉଁ ଭାଷା ଲିପିବଦ୍ଧ ନୁହେଁ ବା ଲିଖିତ ଆକାରରେ ନାହିଁ ତାହାର ବ୍ୟାକରଣ ନାହିଁ ବୋଲି ଏମାନଙ୍କର ଧାରଣା । ଲିଖିତ ଭାଷାର ବ୍ୟାକରଣ ରହିବା ଧାରଣା ଗ୍ରୀକ୍ ଭାଷାରେ ବ୍ୟାକରଣ ଶବ୍ଦର ମୂଳ ବ୍ୟୁତ୍ପତ୍ତିଗତ ଅର୍ଥ 'ଲେଖିବା' ଶବ୍ଦରୁ ସୃଷ୍ଟି ହୋଇଛି । ଗ୍ରୀକ୍ ଭାଷାରେ 'ଗ୍ରାମାର' ବା ବ୍ୟାକରଣ ଶବ୍ଦ 'ଗ୍ରାମାଟିକେ ଟେକ୍‌ନେ' ବା 'ଲିଖନ କଳା'ରୁ ଆସିଛି । ଗ୍ରୀକ୍ ବ୍ୟାକରଣ-କାର ଡାଇଓନିୟସ ଥ୍ରାକସ ତାଙ୍କ ଗ୍ରୀକ୍ ବ୍ୟାକରଣରେ ଲେଖିଛନ୍ତି, 'ବ୍ୟାକରଣ ହେଉଛି କବି ଓ ଗଦ୍ୟ ଲେଖକମାନଙ୍କର ଲେଖାରେ ସାଧାରଣ ପ୍ରୟୋଗ ଗୁଡ଼ିକ ବିଷୟରେ ବ୍ୟାବହାରିକ ଜ୍ଞାନ' । ପୁଣି ଜଣାଯାଏ ଯେ ପ୍ରାଚୀନ ଫ୍ରେଞ୍ଚ 'ଗ୍ରାମାରିନ୍' ଶବ୍ଦ ଉଧାର ରୂପରେ ମିଡ଼ଲ ଇଂଲିଶ ଗ୍ରାମାରରେ ପ୍ରଚଳିତ ହୋଇ 'ଗ୍ରାମାର' ଶବ୍ଦର ପ୍ରୟୋଗ ଇଂରେଜୀ ଭାଷାକୁ ଆସିଥିଲା । ପ୍ରାୟ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ବ୍ୟାକରଣ କହିଲେ କେବଳ ଲାଟିନ ଭାଷାର ବ୍ୟାକରଣକୁ ବୁଝାଉ ଥିଲା ଏବଂ ସମୟ ଥିଲା ଯେତେବେଳେ ବ୍ୟାକରଣ କହିଲେ ଲୋକେ କେବଳ ଲାଟିନ ଭାଷା ବୋଲି ହିଁ ବୁଝୁଥିଲେ ।

କେହି କେହି ମନେ କରନ୍ତି ଯେ ଗୋଟିଏ ଭାଷାର ବ୍ୟାକରଣ ଭଲ ବା ଠିକ ଏବଂ ଅନ୍ୟ ଗୋଟିଏ ଭାଷାର ବ୍ୟାକରଣ ଖରାପ ବା ଭୁଲ । ବ୍ୟାକରଣରେ ଲିଖିତ ଭାଷା କିପରି ଶୁଦ୍ଧ ହେବ ଓ ପାଠ୍ୟ ପୁସ୍ତକଗତ ବ୍ୟାକରଣରେ ଭାଷା କିପରି ଭଲ ହେବ ଏବଂ କଥିତ ଭାଷା ଭୁଲ ଓ ଏହା ଲିଖିତ ଭାଷାର ବିକୃତ ରୂପ ପ୍ରଭୃତି ବିଷୟରେ ଯେଉଁମାନଙ୍କର ଜ୍ଞାନ ଅଛି ସେହିମାନେହିଁ ବ୍ୟାକରଣ ଜାଣନ୍ତି ବୋଲି ମଧ୍ୟ କେତେକ ମତ ପୋଷଣ କରନ୍ତି । କିନ୍ତୁ ପ୍ରକୃତରେ କୁହାଯାଇ ପାରେ ଯେ ଯିଏ ଯୋଉ ଭାଷାର ଲୋକ ସିଏସେଇ ଭାଷାର ବ୍ୟାକରଣ ଜାଣେ । କାରଣ ଅନ୍ୟଭାଷୀ

ଲୋକ ସେଇ ଭାଷା କହିବା ବେଳେ କୌଣସି ଭୁଲ ପ୍ରୟୋଗ କରିଦେଲେ ସେ ସଙ୍ଗେ ସଙ୍ଗେ ସେ ଭୁଲ ଧରି ଦେଇପାରେ ।

କେତେକ ଭାବନ୍ତି ଯେ ବ୍ୟାକରଣ ହେଉଛି ପାଠ୍ୟ ପୁସ୍ତକ ରୂପେ ଭାଷାର ବ୍ୟାକରଣ ପଢ଼ିବା ପାଇଁ ଅନୁମୋଦିତ ବ୍ୟାକରଣ ପୁସ୍ତକ । କିନ୍ତୁ ଭାଷାର ବ୍ୟାକରଣ କେବଳ ପାଠ୍ୟପୁସ୍ତକ ଭାବରେ ପଢ଼ାଯିବା ପାଇଁ ଉଦ୍ଦିଷ୍ଟ ନୁହେଁ । ଏହା ବାସ୍ତବରେ ଭାଷାର ଗଠନ ପଦ୍ଧତି ଅନୁଶୀଳନ ଦ୍ୱାରା ପ୍ରତ୍ୟେକ ଭାଷାର ସ୍ୱାତନ୍ତ୍ର୍ୟ ବା ବୈଶିଷ୍ଟ୍ୟ ଉପସ୍ଥାପନ କରିବା ଉଦ୍ଦେଶ୍ୟରେ ରଚିତ ।

ଭାରତ ବର୍ଷରେ ପ୍ରାଚୀନ କାଳରେ ଭାଷାର ବ୍ୟାକରଣ ସମ୍ବନ୍ଧରେ ପ୍ରଥମ ସୂଚନା ମିଳେ ବେଦରୁ । ବ୍ୟାକରଣ ଜ୍ଞାନ ବିନା ବେଦ ଅଧ୍ୟୟନ ଅସମ୍ଭବ ହୋଇଥିବାରୁ ବିଦ୍ୟାର୍ଥୀମାନଙ୍କୁ ସଂସ୍କୃତରେ ଷଡ଼ ବେଦାଙ୍ଗ ଅଧ୍ୟୟନ କରିବାକୁ ପଡୁଥିଲା । ଶିକ୍ଷା, ଛନ୍ଦସ୍, ବ୍ୟାକରଣ, ନିରୁକ୍ତ, ଜ୍ୟୋତିଷ ଓ କଳ୍ପ ନାମରେ ଥିବା ଷଡ଼ ବେଦାଙ୍ଗ ମଧ୍ୟରୁ ପ୍ରଥମ ଚାରୋଟି ଅଙ୍ଗ ହେଉଛି କେବଳ ଭାଷା ବିଷୟରେ । ସଂସ୍କୃତ ବ୍ୟାକରଣକୁ ବିଦ୍ୟାର୍ଥୀମାନେ ମୁଖସ୍ଥ କରୁଥିଲେ ଏବଂ ସେଥିପାଇଁ ସଂସ୍କୃତ ବ୍ୟାକରଣର ସମସ୍ତ ବିଷୟବସ୍ତୁକୁ ବ୍ୟାକରଣକାରମାନେ ଅତି ସଂକ୍ଷେପରେ ବର୍ଣ୍ଣନା କରିବା ପାଇଁ ଚେଷ୍ଟା କରିଥିଲେ । ଏହି ଉଦ୍ଦେଶ୍ୟରେ ସମଗ୍ର ସଂସ୍କୃତ ଭାଷାର ବ୍ୟାକରଣକୁ ପାଣିନି ମାତ୍ର ଆଠଟି ଅଧ୍ୟାୟରେ 'ଅଷ୍ଟାଧ୍ୟାୟୀ' ନାମରେ ରଚନା କରିଥିଲେ ।

ବୈଦିକ ସଂସ୍କୃତ ଭାଷାର ପବିତ୍ରତା ଓ ଉଚ୍ଚାରଣର ଶୁଦ୍ଧତା ରକ୍ଷା କରିବା ପାଇଁ ଖ୍ରୀଷ୍ଟପୂର୍ବ ପ୍ରାୟ ୫ମ ଶତାବ୍ଦୀରେ ପାଣିନି ସଂସ୍କୃତ ଭାଷାର ବ୍ୟାକରଣ ରଚନା କରିଥିଲେ । ପାତଞ୍ଜଳି ତାଙ୍କ 'ମହାଭାଷ୍ୟ'ର ଭୂମିକାରେ ପାଣିନି ତାଙ୍କ 'ଅଷ୍ଟାଧ୍ୟାୟୀ'ର 'ଶବ୍ଦାନୁଶାସନ'କୁ ପ୍ରାଚୀନ ସଂସ୍କୃତର ଶୁଦ୍ଧତା ରକ୍ଷା ପାଇଁ ରଚନା କରିଛନ୍ତି ବୋଲି ଲେଖିଛନ୍ତି । ପାଣିନିଙ୍କ ବ୍ୟାକରଣ 'ଅଷ୍ଟାଧ୍ୟାୟୀ'ର ସଂସ୍କୃତ ରୀତି କାଳକ୍ରମେ ଭାରତୀୟ ସଂସ୍କୃତ ରୀତିରେ ପରିଣତ ହୋଇ ଭାରତୀୟ ବ୍ୟାକରଣିକ ପରମ୍ପରା ଭାବରେ ଗଢ଼ି ଉଠିଛି । ପରବର୍ତ୍ତୀ କାଳରେ ଆଧୁନିକ ଭାରତୀୟ ଭାଷାଗୁଡ଼ିକ କଥିତ ସଂସ୍କୃତ ଭାଷାରୁ ସୃଷ୍ଟି ହୋଇ ନିଜର ସ୍ୱତନ୍ତ୍ର ସ୍ୱରୂପ ପ୍ରକାଶ କରିବା ବେଳେ ଜନ୍ମଗତ ଓ ବଂଶଗତ ସାଦୃଶ୍ୟ ସମ୍ପର୍କ କାରଣରୁ

ସଂସ୍କୃତ ବ୍ୟାକରଣିକ ରୀତି ଦ୍ୱାରା ବହୁ ଭାବରେ ପ୍ରଭାବିତ ଓ ନିୟନ୍ତ୍ରିତ ହୋଇଥିବା ଦେଖାଯାଏ ।

ଇଏ ତ ଗଲା ବ୍ୟାକରଣର ଆବଶ୍ୟକତା ଓ ବ୍ୟାକରଣ ସମ୍ବନ୍ଧରେ କେତେକ ଭ୍ରାନ୍ତ ଧାରଣା ଏବଂ ଭାରତୀୟ ବ୍ୟାକରଣିକ ପରମ୍ପରା ବିଷୟରେ କିଛି ସୂଚନା । ବର୍ତ୍ତମାନ ପ୍ରଶ୍ନ ଉଠିପାରେ ବ୍ୟାକରଣ କହିଲେ କ'ଣ ବୁଝାଏ ? ପତଞ୍ଜଳିଙ୍କ ମତାନୁସାରେ ବ୍ୟାକରଣ ହେଉଛି ଭାଷା ସମ୍ବନ୍ଧୀୟ କେତେକ ସୂତ୍ରର ସମାହାର । କିନ୍ତୁ ଭାଷାରେ ବ୍ୟାକରଣ ସୂତ୍ରର ଆବଶ୍ୟକତା ବା କାହିଁକି ରହିଛି ? ଏ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଆଧୁନିକ ଭାଷାବିତ୍ ବିଜୟ ମହାପାତ୍ର ଏକ ସୁନ୍ଦର ଉଦାହରଣ ଦେଇଛନ୍ତି । ସେ ଲେଖିଛନ୍ତି, "ଆମେ ଯଦି ମନଇଚ୍ଛା ଯାହା ତାହା କହିପାରୁଥାନ୍ତେ ତାହେଲେ ସୂତ୍ରର ଆବଶ୍ୟକତା ନ ଥିଲା । ଟିକିଏ ଲକ୍ଷ୍ୟକରି ଦେଖିଲେ ବୁଝି ହେବ ଯେ, ଆମେ ନାନା ପ୍ରକାରେ କହି ପାରୁଥିଲେ ବି ଅଦ୍ଭୁତ ପ୍ରକାରରେ କହିପାରୁ ନାହେଁ । ଓଡ଼ିଆରେ ତ୍, ଦ୍, କ୍ ତିନୋଟି ବର୍ଣ୍ଣ । 'ଭକ୍ତ', 'ଉତ୍କଳ' ପରି ଶବ୍ଦ ମାନଙ୍କରେ ଆମେ କ୍ + ତ ଓ ତ୍ + କ ଯୋଗ କରି ପାରୁଛେ, କିନ୍ତୁ କ୍ + ଦ ବା ଦ୍ + କ ଯୁକ୍ତ ବର୍ଣ୍ଣ ଓଡ଼ିଆରେ ଅସମ୍ଭବ । ଫଳରେ ବର୍ଣ୍ଣମାନଙ୍କ ମଧ୍ୟରେ ପକ୍ଷପାତିତା ଯେପରି ଅଛି ନିରପେକ୍ଷତା ମଧ୍ୟ ସେହି ପରିମାଣରେ ଅଛି । କେତେକ କଥା ଓଡ଼ିଆରେ ଯେପରି ବିଧି ସେହିପରି ଅନ୍ୟ କେତେକ ଅବିଧି" । ଏହି କାରଣରୁ ଭାଷାର ବ୍ୟାକରଣିକ ସୂତ୍ର ନିର୍ଦ୍ଧାରଣ କରାଯାଇ ସେଇ ସୂତ୍ର ଅନୁଯାୟୀ ପ୍ରାଚୀନ କାଳରେ ପ୍ରଚଳିତ ସମସାମୟିକ ସଂସ୍କୃତ ଭାଷାକୁ ବର୍ଣ୍ଣନା କରାଯାଇଥିଲା । ଭାଷାର ସୂତ୍ର ଗୁଡ଼ିକ ଥରେ ନିର୍ଦ୍ଧାରିତ ହୋଇ ସାରିବା ପରେ ତାହା ବ୍ୟାକରଣ ଭାବରେ ଭାଷାର ଅଶୁଦ୍ଧ ପ୍ରୟୋଗକୁ ନିୟନ୍ତ୍ରିତ କରି ଆସୁଥିଲା । ପ୍ରାଚ୍ୟରେ ସଂସ୍କୃତ ବ୍ୟାକରଣ ଓ ପାଶ୍ଚାତ୍ୟରେ ଲାଟିନ ଗ୍ରାମାର ସମାନ୍ତରାଳ ଭାବରେ ପରବର୍ତ୍ତୀ କାଳରେ ଆଧୁନିକ ଭାଷାମାନଙ୍କର ସୂତ୍ର ନିର୍ଦ୍ଧାରଣ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ଆସିଛନ୍ତି ।

କାଳକ୍ରମେ ଊନବିଂଶ ଶତାବ୍ଦୀରେ ଇଉରୋପରେ ପାଶ୍ଚାତ୍ୟ ଭାଷାବିତ୍‌ମାନଙ୍କ ଦ୍ୱାରା ପ୍ରାଚ୍ୟରେ ସଂସ୍କୃତ ଭାଷାର ଆବିଷ୍କାର ହେବା ଫଳରେ ପାଶ୍ଚାତ୍ୟ ତଥା ସମଗ୍ର ବିଶ୍ୱରେ ଭାଷା ଆଲୋଚନା କ୍ଷେତ୍ରରେ ଅଭୂତପୂର୍ବ ପରିବର୍ତ୍ତନମାନ ଦେଖାଦେଲା । ୧୭୮୬ରେ ସାର ଉଇଲିୟମ

ଜୋନ୍ସ ଭାରତର ବ୍ରିଟିଶ କୋର୍ଟରେ ଜଜ୍ ଥିବା ସମୟରେ କଲିକତାର ରୟାଲ ଏସିଆଟିକ ସୋସାଇଟିରେ ତାଙ୍କ ପଠିତ ପ୍ରବନ୍ଧରେ ପ୍ରମାଣ ସହ ପ୍ରକାଶ କରିଥିଲେ ଯେ ସଂସ୍କୃତ ଭାଷାର ଲଟିନ, ଗ୍ରୀକ୍ ଓ ଜର୍ମାନ ଭାଷା ସହିତ ଅଦ୍ଭୁତ ଭାବରେ ଜ୍ଞାତି ସମ୍ପର୍କ ରହିଛି । ସାର ଜୋନ୍ସଙ୍କର ଏହି ତଥ୍ୟର ଆବିଷ୍କାର ଭାଷା ଆଲୋଚନାକୁ ଏକ ନୂତନ ମୋଡ଼ ଦେବା ସଙ୍ଗେ ସଙ୍ଗେ ଇଣ୍ଡୋ-ଇଉରୋପୀୟ ଭାଷାଗୋଷ୍ଠୀ ଭିତରେ ବିଭିନ୍ନ ଦିଗରୁ ପରୀକ୍ଷାମୂଳକ ଭାବରେ ଆଲୋଚନାମାନ ଆରମ୍ଭ କରାଇବାରେ ସାହାଯ୍ୟ କଲା । ଊନବିଂଶ ଶତାବ୍ଦୀର ଏହି ଭାଷା ଆଲୋଚନାକୁ 'ତୁଳନାତ୍ମକ ଭାଷାବିଜ୍ଞାନ' ନାମ ଦେଇ ଭାଷାମାନଙ୍କର ତୁଳନାମୂଳକ ଅତୀତ କାଳାନୁକ୍ରମିକ ଆଲୋଚନାମାନ ଆରମ୍ଭ ହେଲା । ସଂସ୍କୃତ ଭାଷା ଓ ଭାରତୀୟ ବ୍ୟାକରଣିକ ପରମ୍ପରା ସହିତ ପାଶ୍ଚାତ୍ୟ ଭାଷାବିତମାନେ ପରିଚିତ ହେବାପରେ ଭାରତୀୟ ବ୍ୟାକରଣଧାରା ଦ୍ୱାରା ବହୁଭାବରେ ପ୍ରଭାବିତ ହେଲେ ଏବଂ ପାଶ୍ଚାତ୍ୟ ବ୍ୟାକରଣ ଆଲୋଚନାରେ ବିଭିନ୍ନ ଦିଗରୁ ତଥ୍ୟମୂଳକ ଆବିଷ୍କାରମାନ ହୋଇ ବିଭିନ୍ନ ଭାଷାଗତ ପରିବର୍ତ୍ତନ ଲୋକଲୋଚନକୁ ଆସି ପାରିଲା ।

ଊନବିଂଶ ଶତାବ୍ଦୀର ତୁଳନାତ୍ମକ ଭାଷା ଆଲୋଚନା କ୍ରମେ ବିଂଶ ଶତାବ୍ଦୀର ଆରମ୍ଭ ସମୟ ବେଳକୁ ଭିନ୍ନ ମୋଡ଼ ନେଲା ଓ ଫଳରେ ଆଧୁନିକ ଭାଷା ଆଲୋଚନା ପାଇଁ କ୍ଷେତ୍ର ପ୍ରସ୍ତୁତ ହୋଇ ପାରିଲା । ଊନବିଂଶ ଶତାବ୍ଦୀର ତୁଳନାମୂଳକ ଭାଷା ଆଲୋଚନା ଦ୍ୱାରା ଇଣ୍ଡୋ-ଇଉରୋପୀୟ ଭାଷା ପରିବାର ଅନ୍ତର୍ଗତ ଭାଷା ଗୁଡ଼କ ବିଭିନ୍ନ ସମୟରେ ବିଭିନ୍ନ ଅବସ୍ଥା ଭିତର ଦେଇ ଗତି କରି କ୍ରମ ପରିବର୍ତ୍ତିତ ରୂପରେ ଆଧୁନିକ ଭାଷା ଭାବରେ ଭାରତରେ ଓ ଇଉରୋପରେ ନିଜର ସ୍ୱରୂପ ପ୍ରକାଶ କରିବା ଜଣାଗଲା । ଏ ପରିବର୍ତ୍ତନ ମୁଖ୍ୟତଃ ସାମାଜିକ, ଭୌଗୋଳିକ ଓ ସାଂସ୍କୃତିକ ପ୍ରଭୃତି ବିଭିନ୍ନ କାରଣରୁ ସଂଘଟିତ ହୋଇଥିଲା । ଏଣୁ ବିଂଶ ଶତାବ୍ଦୀର ଆଧୁନିକ ଭାଷାବିତ୍‌ମାନେ କ୍ରମେ ବୁଝି ପାରିଲେ ଯେ ଭାଷା ସ୍ଥିର ନୁହେଁ, ଗତିଶୀଳ ଓ ପରିବର୍ତ୍ତନଶୀଳ, ଏବଂ ଆଜିର ଭାଷା ଅତୀତର ନିର୍ଦ୍ଧାରିତ ସୂତ୍ର ଉପରେ ଯେତିକି ପରିମାଣରେ ଦଣ୍ଡାୟମାନ ଭବିଷ୍ୟତର ଆଗାମୀ ପରିବର୍ତ୍ତନକୁ ଗ୍ରହଣ କରିବା ପ୍ରତି ମଧ୍ୟ ସେତିକି ପରିମାଣରେ ନିଜକୁ ମୁକ୍ତ ରଖେ । ସେମାନେ ଏହା ମଧ୍ୟ ଉପଲବ୍ଧି କଲେ ଯେ ଚଳି ଆସିଥିବା ପୂର୍ବ ଧାରଣା ପ୍ରାଚୀନ ଗ୍ରନ୍ଥମାନଙ୍କର ଲିଖିତ

ଭାଷା ଶୁଦ୍ଧ, ଏଣୁ ଆଦର୍ଶ ସ୍ଥାନୀୟ, ଏ ଧାରଣା ଠିକ୍ ନୁହେଁ । ତେଣୁ ସେମାନେ ଏକ ଆଦର୍ଶ ସ୍ଥାନୀୟ ଭାଷା ପରିବର୍ତ୍ତେ ଏବଂ ଭାଷାମାନଙ୍କର ତୁଳନାମୂଳକ ଅତୀତ ଅନୁଶୀଳନ ବଦଳରେ ସମକାଳୀନ କଥିତ ଭାଷାକୁ ଗୁରୁତ୍ୱ ଦେଇ ତାର ସ୍ୱରୂପ ବର୍ଣ୍ଣନା କରିବାରେ ଆଗ୍ରହାନ୍ୱିତ ହେଲେ । ଯେହେତୁ ଭାଷା ପରିବର୍ତ୍ତନଶୀଳ ତେଣୁ ତାହାର ବ୍ୟାକରଣ ମଧ୍ୟ ପରିବର୍ତ୍ତନଶୀଳ ହେବାକୁ ବାଧ୍ୟ ଏବଂ ନିର୍ଦ୍ଦିଷ୍ଟ କୌଣସି ପ୍ରାଚୀନ ଭାଷାର ବ୍ୟାକରଣ ଦ୍ୱାରା ଏହା ଆବଦ୍ଧ ନ ରହି ସ୍ୱତନ୍ତ୍ର ଭାବରେ ବିକାଶ ଲାଭ କରିବାକୁ ମଧ୍ୟ ବାଧ୍ୟ । ପ୍ରତ୍ୟେକ ଭାଷାର ସ୍ୱତନ୍ତ୍ର ସ୍ଥିତି ଓ ସ୍ୱତନ୍ତ୍ର ସ୍ୱରୂପ କଥିତ ରୂପରେ ପ୍ରଥମେ ପ୍ରକାଶ ପାଇବାପରେ ବୈଜ୍ଞାନିକ ପଦ୍ଧତିରେ ତାହାର ବାସ୍ତବ ଧର୍ମୀ ବିଶ୍ଳେଷଣ ବା ଅନୁଶୀଳନ କରାଯାଇ ସେଇ ଭାଷାର ଗଠନ ପଦ୍ଧତି ବର୍ଣ୍ଣନା କରାଯାଇଥାଏ । ବୈଜ୍ଞାନିକ ପଦ୍ଧତିରେ ଭାଷାର ଏହି ଗଠନ ପଦ୍ଧତି ବର୍ଣ୍ଣନାର ଅନ୍ୟ ନାମ ଆଧୁନିକ ଭାଷା ବିଜ୍ଞାନ ।

ଭାଷା ବିଶ୍ଳେଷଣ ହିଁ ବ୍ୟାକରଣର ବିଷୟ ବସ୍ତୁ । କୁହାଯାଇଛି ଯେ "ବ୍ୟା-କରୋତି" ଅର୍ଥାତ ଭାଷାର ତନ୍ନ ତନ୍ନ ବିଶ୍ଳେଷଣ ଓ ବିଭାଜନ । ପ୍ରାଚ୍ୟ ଓ ପାଶ୍ଚାତ୍ୟରେ ବ୍ୟାକରଣର କ୍ରମ ବିକାଶକୁ ଲକ୍ଷ୍ୟ କରି ପାଶ୍ଚାତ୍ୟ ଭାଷାବିତ୍ ଜନ ଲିୟନ୍ସ କହନ୍ତି, "ଆଧୁନିକ ଭାଷା ବିଜ୍ଞାନ ତଥା ଆଧୁନିକ ବ୍ୟାକରଣ ଅତୀତର ଧାରା ଉପରେ ହିଁ ଗଢ଼ି ଉଠିଛି ଏବଂ ଏପରି ଗଢ଼ି ଉଠିବା ବେଳେ ଏହା ଅତୀତର ପାରମ୍ପରିକ ବ୍ୟାକରଣର ବିଭିନ୍ନ ତଥ୍ୟକୁ ସମାଲୋଚନା କରି ଏବଂ ସେଥିରେ ଥିବା କେତେକ ତ୍ରୁଟିପୂର୍ଣ୍ଣ ବା ଦୋଷପୂର୍ଣ୍ଣ ତଥ୍ୟକୁ ବାଦ୍ ଦେଇ ଓ ଆବଶ୍ୟକ ସ୍ଥଳେ ବିଭିନ୍ନ ପରିବର୍ତ୍ତନ ଘଟାଇ ବିକାଶ ଲାଭ କରିଛି ।" ଅତଏବ ଅତୀତର ବିକାଶ ଲାଭ କରିଥିବା ପାରମ୍ପରିକ ବ୍ୟାକରଣ ହିଁ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟରେ ଆଜିର 'ଆଧୁନିକ ଭାଷା ବିଜ୍ଞାନ' ।

ଆଧୁନିକ ଭାଷା ବିଜ୍ଞାନରେ ଭାବ ପ୍ରକାଶ ପାଇଁ ମଣିଷ ବ୍ୟବହାର କରୁଥିବା ଭାଷା ହେଉଛି ମଣିଷ ମୁଖ ନିଃସୃତ କେତେକ ଧ୍ୱନି ପଦ୍ଧତି । ଇଚ୍ଛାକୃତ ଭାବରେ ଉଚ୍ଚାରଣ କରାଯାଉଥିବା ଧ୍ୱନିଗୁଡ଼ିକର ଶୃଙ୍ଖଳିତ ସମ୍ବନ୍ଧ ହିଁ ପ୍ରତ୍ୟେକ ଭାଷାର ଧ୍ୱନି, ଶବ୍ଦ ଓ ବାକ୍ୟ, ଡିସକୋର୍ସ ଏବଂ ଅର୍ଥ ଭାବରେ ପ୍ରକାଶ ପାଏ । ପ୍ରତ୍ୟେକ ଭାଷାର ଏହି ପାଞ୍ଚୋଟି ସ୍ତର ଥାଏ ଏବଂ ପ୍ରତ୍ୟେକ ସ୍ତର ମଧ୍ୟରେ ଅବିଚ୍ଛିନ୍ନ ସମ୍ପର୍କ ରହିଥାଏ ।

କେବଳ ଅନୁଶୀଳନର ସୁବିଧା ପାଇଁ ଏପରି ସ୍ତରୀକରଣ କରିବାକୁ ପଡ଼ଥାଏ । ଭାଷା ବିଜ୍ଞାନରେ ଭାଷାର ଧ୍ୱନି ସମ୍ବନ୍ଧୀୟ ଆଲୋଚନାକୁ ଧ୍ୱନିତତ୍ତ୍ୱ, ଶବ୍ଦ ଓ ବାକ୍ୟ ଗଠନ ସମ୍ବନ୍ଧୀୟ ଆଲୋଚନାକୁ ରୂପତତ୍ତ୍ୱ ଓ ବାକ୍ୟତତ୍ତ୍ୱ ବା ବ୍ୟାକରଣ; ଏକ ନିର୍ଦ୍ଦିଷ୍ଟ ପରିସର ମଧ୍ୟରେ ବ୍ୟବହୃତ କଥୋପକଥନ ରୀତିକୁ ଡସ୍କୋର୍ସ ଏବଂ ଭାଷାରେ ପ୍ରକାଶ ପାଉଥିବା ସରଳ, ଜଟିଳ ତଥା ଦ୍ୱି ଅର୍ଥ ବା ବହୁବିଧ ଅର୍ଥ ସମ୍ବନ୍ଧୀୟ ଆଲୋଚନାକୁ ଅର୍ଥତତ୍ତ୍ୱ କୁହାଯାଏ । ଭାଷା ବିଜ୍ଞାନରେ ଭାଷା ନିର୍ମାଣ ବା ଭାଷା ଗଠନ ପଦ୍ଧତି ସମ୍ବନ୍ଧୀୟ ଆଲୋଚନା ଅନ୍ତର୍ଭୁକ୍ତ ହୋଇଥିବା ବେଳେ, ଏକ ବ୍ୟାପକ ଅର୍ଥରେ ଭାଷା ବିଜ୍ଞାନ ସହିତ ଭାଷା ସମ୍ବନ୍ଧୀୟ ସମସ୍ତ ଆଲୋଚନା ହେଉଛି 'ଭାଷାତତ୍ତ୍ୱ'ର ବିଷୟ ବସ୍ତୁ ।

ପ୍ରସଙ୍ଗ ସୂଚନା :


୧ । ହକେଟ, ସି. ଏଫ୍; 'ଏ କୋର୍ସଇନ ମଡ଼ର୍ଣ୍ଣ ଲିଙ୍ଗୁଷ୍ଟିକସ୍', ୧୯୭୪, ପୃ-୫୭୪

୨ । କ୍ରିଷ୍ଟାଲ, ଡ଼.; 'ଲିଙ୍ଗୁଷ୍ଟିକସ୍', ୧୯୭୩, ପୃ-୪୦

୩ । ପାମର, ଏଫ; 'ଗ୍ରାମାର', ୧୯୭୬, ପୃ-୯

୪ । ରୁଲେଟ, ଇ; 'ଲିଙ୍ଗୁଷ୍ଟିକସ ଥିଓରି ଲିଙ୍ଗୁଷ୍ଟିକ ଆଣ୍ଡ ଲାଙ୍ଗୁଏଜ ଟିଚିଙ୍ଗ,' ୧୯୬୬, ପୃ-୬୧

୫ । ରବିନସ୍, ଆର. ଏଚ; 'ଏ ସର୍ଟ ହିଷ୍ଟ୍ରି ଅଫ ଲିଙ୍ଗୁଷ୍ଟିକସ୍' ୧୯୭୯, ପୃ-୩୧

୬ । 'ନିଉ ଏନସାଇକ୍ଲୋପେଡ଼ଆ ବ୍ରିଟାନିକା', ପୃ-୨୬୬

୭ । ମହାପାତ୍ର, ବି; 'ଓଡ଼ଆ ଭାଷାତାତ୍ତ୍ୱିକ ପ୍ରବନ୍ଧ', ୧୯୮୩, ପୃ-୧

୮ । ମିଶ୍ର, ବି. ଏନ୍; 'ଦି ଡେସକ୍ରିପଟିଭ ଟେକନିକ୍ ଅଫ ପାଣିନି,' ୧୯୬୬, ପୃ-୧୭

୯ । ଲିୟନ୍ସ, ଜେ. 'ଇଣ୍ଟ୍ରଡକସନ୍ ଟୁ ଥିଓରିଟିକାଲ ଲିଙ୍ଗୁଷ୍ଟିକସ୍,' ୧୯୭୧, ପୃ-୩୩

୧୦ । ତାର୍‌ପୋରେଓ୍ୱାଲା; ଆଇ. ଜେ. ଏସ; 'ସାନସ୍କ୍ରିଟ ସିନଟାକସ,'
୧୯୬୭, ପୃ-୨୭

ଗ୍ରନ୍ଥ ସୂଚନା :

୧ । ସାପିର, ଏଡ୍‌ୱାର୍ଡ; 'ଲଙ୍ଗୁଏଜ', ୧୯୭୧, ପୃ-୩

୨ । ଧଳ, ଗୋଲକ ବିହାରୀ; 'ଭାଷାଶାସ୍ତ୍ର ପରିଚୟ',
୧୯୭୬, ପୃ-୩୪

୩ । ମହାପାତ୍ର, ବି ପି; 'ଓଡ଼ିଆ ଭାଷାତାତ୍ତ୍ୱିକ ପ୍ରବନ୍ଧ'
୧୯୮୩, ପୃ-୧୩

୪ । ଧଳ, ଗୋଲକ ବିହାରୀ; ଧ୍ୱନି ବିଜ୍ଞାନ, ୧୯୭୪, ପୃ-୭

—o—

# ଭାଷା ଓ ଓଡ଼ିଆ ଭାଷାତତ୍ତ୍ୱ

ମଣିଷର ନିତିଦିନିଆ ଜୀବନରେ ଭାଷାର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି, କାରଣ ମଣିଷ ବିନା ଭାଷାର ଅସ୍ତିତ୍ୱ ହିଁ କଳ୍ପନା କରାଯାଏ ନାହିଁ । ଭାଷା ନିତିଦିନିଆ ଓ ମଣିଷସର୍ବସ୍ୱ ହେଲେ ମଧ୍ୟ ସାଧାରଣ ଲୋକେ ଭାଷା ସମ୍ବନ୍ଧରେ କ୍ୱଚିତ କିଛି ଚିନ୍ତା କରିଥାନ୍ତି । ଆମେରିକାର ବିଶିଷ୍ଟ ଭାଷାବିତ୍ ଏଡ଼ୱାର୍ଡ ସାପିର କହନ୍ତି, "ଭାଷା ମଣିଷ ଜୀବନରେ ଏମିତି ଏକ ନିତିଦିନିଆ ଜିନିଷ ଯେ, ଏହାକୁ ବିଷୟବସ୍ତୁ କରି ଆମେ କ୍ୱଚିତ କିଛି ଭାବିଥାଉ ।" ତଥାପି ଭାଷା ସମ୍ବନ୍ଧରେ ଆଗ୍ରହୀ ଭାଷାବିତ୍ ମନରେ ସ୍ୱତଃ ନାନା ପ୍ରକାର ପ୍ରଶ୍ନ ଉଠେ, ଯଥା—ଭାଷା କିପରି ସୃଷ୍ଟି ହେଲା, ଭାଷାର ଗଠନ କିପରି, ଲୋକେ କାହିଁକି ବିଭିନ୍ନ ଭାଷାରେ କଥା କହନ୍ତି, ଭାଷାରେ ବିଭିନ୍ନ ଅର୍ଥ କାହିଁକି ପ୍ରକାଶ ପାଏ, ଭାଷା ବିନା ଚିନ୍ତା କରିବା ସମ୍ଭବ କି, ପୃଥିବୀରେ କେତେ ଭାଷା ଅଛି, ପୃଥିବୀର ସବୁଠାରୁ ପ୍ରାଚୀନ ଭାଷା କେଉଁଟି, ପୃଥିବୀର ସବୁ ଭାଷାରେ ସାହିତ୍ୟ ଅଛି କି, ପୃଥିବୀରେ ଏକ କୃତ୍ରିମ ଭାଷା ପ୍ରଚଳନ ସମ୍ଭବ କି ପ୍ରଭୃତିଠାରୁ ଆରମ୍ଭ କରି ଭାଷା ସମ୍ବନ୍ଧୀୟ ଏହିପରି ବହୁ ପ୍ରଶ୍ନ ।

ତେବେ ଭାବ ପ୍ରକାଶ ଓ ଭାବ ସଞ୍ଚାର କ୍ଷେତ୍ରରେ ମଣିଷ କହୁଥିବା ଭାଷା ହିଁ ମଣିଷକୁ ପୃଥିବୀର ଅନ୍ୟାନ୍ୟ ଇତର ପ୍ରାଣୀମାନଙ୍କଠାରୁ ପୃଥକ କରି ସ୍ୱତନ୍ତ୍ର ସ୍ଥାନ ଦେଇଥାଏ । ସି. ଏଫ. ହକେଟଙ୍କ ମତରେ ମଣିଷ କହୁଥିବା ଭାଷାର ସର୍ବଦା ଦୁଇଟି ଗଠନ ସ୍ତର ଥାଏ, ଯାହା ଇତର ପ୍ରାଣୀମାନଙ୍କର ଡାକ ବା ପ୍ରକାଶ ଧ୍ୱନିରେ ନ ଥାଏ । ଏହି ଦୁଇଟି ସ୍ତର ମଧ୍ୟରୁ ଗୋଟିଏ ହେଲା ଧ୍ୱନି ସ୍ତର ଓ ଅନ୍ୟଟି ହେଉଛି ତା'ର ଶବ୍ଦ ଗଠନ ସ୍ତର । ଇତର ପ୍ରାଣୀଙ୍କର ଭାବ ବିନିମୟର ମାଧ୍ୟମ କେବଳ କେତୋଟି ସୀମିତ ସୂଚନା ସାହାଯ୍ୟରେ ପ୍ରକାଶିତ ହୋଇଥାଏ । କିନ୍ତୁ ମଣିଷର ଭାଷାରେ କୁହାଯାଉଥିବା କଥାକୁ ଅନୁଶୀଳନ କଲେ କେତେକ କ୍ଷୁଦ୍ରତମ ଏକକରେ ପହଞ୍ଚି ହୁଏ । ଭାଷାର କେତେକ ସୀମିତ ସଙ୍କେତ ସାହାଯ୍ୟରେ ମଧ୍ୟ ବହୁ ଅର୍ଥ ପ୍ରକାଶ କରିହୁଏ ।

ଭଷା ସୃଜନଶୀଳ ଏବଂ ଇଚ୍ଛାକୃତ । ଏହା ସୃଜନଶୀଳ ବୋଲି ବାରମ୍ବାର ପୁନରାବୃତ୍ତି ହେଉଥିଲେ ମଧ୍ୟ ଏହାକୁ ଚିର ନୂତନ ରୂପରେ ଆମେ ପ୍ରୟୋଗ କରିପାରୁ । ଭଷା ଇଚ୍ଛାକୃତ ହୋଇଥିବାରୁ ପ୍ରତ୍ୟେକ ଭଷାର୍ ଅଲଗା ଅଲଗା ପ୍ରୟୋଗ ରୀତି ରହିଛି । ସେଥିପାଇଁ ଆମେ ଓଡ଼ିଆରେ 'କୁକୁର' କହିଲାବେଳେ ବଙ୍ଗଳାରେ ତାକୁ 'କୁକୁର୍', ହିନ୍ଦୀରେ 'କୁତ୍ତା', ତେଲୁଗୁରେ 'କୁକମା', ତାମିଲରେ 'ନାୟ୍', ଇଂରଜୀରେ 'ଡ଼ଗ', ଋଷିୟାନରେ 'ସୋବକୋ' ଓ ଜର୍ମାନୀରେ 'ହୁଣ୍ଡ' କହୁଥିବା ଦେଖାଯାଏ । ଭଷାର ସଂଜ୍ଞା ନିରୂପଣ କରିବାକୁ ଯାଇ ସାପିର କହନ୍ତି, "ଭଷା ସମ୍ପୂର୍ଣ୍ଣ ମଣିଷ ସୃଷ୍ଟ ଓ ଏହା ମଣିଷର ଭବ ଆବେଗ ତଥା ମନୋଭବର ପରିପ୍ରକାଶ ପାଇଁ ଏକ ସ୍ୱେଚ୍ଛାଭୂତ ପ୍ରକ୍ରିୟା, ଯାହାକୁ କେତେକ ଆବଶ୍ୟକ ସଙ୍କେତ ସାହାଯ୍ୟରେ ପ୍ରକାଶ କରଯାଇଥାଏ ।" ଏହାର ଉଦାହରଣ ଦେଇ ସେ କହନ୍ତି ଯେ ଶିଶୁଟିଏ ଜନ୍ମ ହେବା ପରେ ନିର୍ଦ୍ଦିଷ୍ଟ ସମୟ ବ୍ୟବଧାନରେ ନିଜର ଜନ୍ମଗତ ପ୍ରକ୍ରିୟା, ଯେପରି ପେଟେଇବା, ଗୁରୁଣ୍ଡିବା, ବସିବା ଠିଆ ହେବା ଓ ଚାଲିବା ପ୍ରଭୃତି କାର୍ଯ୍ୟକଳାପଗୁଡ଼ିକୁ ସ୍ୱତଃପ୍ରବୃତ୍ତ ହୋଇ କ୍ରମଶଃ ଚେଷ୍ଟା କରି ଆୟତ୍ତ କରେ, ସେପରି ସେ ତା'ର ଭଷାକୁ କିନ୍ତୁ ସ୍ୱତଃପ୍ରବୃତ୍ତ ଭାବରେ ଆୟତ୍ତ କରିପାରେ ନାହିଁ । ଯଦିଓ କଥା କହିବା ତା' ପାଇଁ ପୂର୍ବ ନିର୍ଦ୍ଧାରିତ ଓ କଥା କହିବା ପାଇଁ ସେ ଆବଶ୍ୟକ ଶାରୀରିକ ଭାଷା-ଯନ୍ତ୍ର ସହିତ ଜନ୍ମଲଭ କରିଥାଏ । ଭାଷାକୁ ଆୟତ୍ତ କରିବା ପାଇଁ ଓ ଭାଷା ଜରିଆରେ ନିଜର ଭାବକୁ ସ୍ପଷ୍ଟ କରିବା ପାଇଁ ଶିଶୁକୁ ତା'ର୍ ପରିବେଶ ତଥା ସାମାଜିକ ପରିବେଷ୍ଟନୀ ଉପରେ ମୁଖ୍ୟତଃ ନିର୍ଭର କରିବାକୁ ପଡ଼େ । ଏଥି ସହିତ ଅବଶ୍ୟ ତା'ର ଭାଷା ଆହରଣ କରିପାରିବାର କ୍ଷମତାକୁ ବିଚାରକୁ ନେବାକୁ ହୁଏ ଏବଂ ନିଖୁଣ ଭାଷା-ଯନ୍ତ୍ର ସହିତ ତାକୁ ଜନ୍ମଲଭ କରିବାକୁ ପଡ଼ଥାଏ ।

ଭାଷା ସ୍ଥିର ପଦେ଼, ଏହା ଗତିଶୀଳ । ଭାଷା ପରିବର୍ତ୍ତନ ହିଁ ଭାଷାକୁ ଗତିଶୀଳ କରେ । ବହୁ ବିଭିନ୍ନ କାରଣରୁ ଭାଷାରେ ପରିବର୍ତ୍ତନ ହୁଏ । ଭାଷାରେ ପରିବର୍ତ୍ତନ କିପରି ହୁଏ ତାହାର ଏକ ଉଦାହରଣ ଦେଇ ଭାଷାବିତ୍ ଗୋଲୋକ ଧଳ ଲେଖିଛନ୍ତି, "କାଳକ୍ରମେ ଭାଷା କେତେ ପରିବର୍ତ୍ତିତ ହୋଇଯାଏ ଅଳ୍ପ କେତୋଟି ଶବ୍ଦ ନେଇ ତାହା ଦେଖାଇ ଦିଆଯାଇପାରେ । ସଂସ୍କୃତର 'ଅପି' ପ୍ରାକୃତ କାଳରେ 'ଅବି' ମାଧ୍ୟମରେ ଆଧୁନିକ ଭାଷାରେ 'ବି' ରେ ପରିଣତ ହୋଇଛି ।

ବୌଦ୍ଧଗାନ-ଦୋହାର 'ଣିଅ', 'ଣାଣା' ଶବ୍ଦ ବର୍ତ୍ତମାନ ଓଡ଼ିଆରେ ବ୍ୟବହୃତ ନ ହୋଇ ତା ସ୍ଥାନରେ 'ନିଜ' ଓ 'ନାନା' ଶବ୍ଦ ବ୍ୟବହୃତ । ଭାଷାର ଏହି ପରିବର୍ତ୍ତନ ଯାଦୃଚ୍ଛିକ ଭାବରେ ନ ହୋଇ ବିଶିଷ୍ଟ ପଦ୍ଧତି ଅନୁସରଣ କରି ହୋଇଥାଏ ବୋଲି ଭାଷାବିତ୍‌ମାନେ ମତ ପୋଷଣ କରନ୍ତି ।

ମଣିଷର ଭାଷା ବହୁ ପ୍ରାଚୀନ ଏବଂ ଏହା ପ୍ରଥମରେ କଥିତ ରୂପରେ ହିଁ ରହିଥିବା ଅନୁମାନ କରଯାଏ । ଭାଷାର ଉତ୍ପତ୍ତି ସମ୍ବନ୍ଧରେ ଆଲୋଚନା କରୁଥିବା ଭାଷାବିତ୍‌ମାନେ ଭାଷାର ଲିଖିତ ରୂପରେ ଆରମ୍ଭ ସମୟକୁ ପ୍ରାୟ ଖ୍ରୀ.ପୂ ୩୫୦୦ରୁ ଖ୍ରୀ.ପୂ ୨୯୦୦ ବର୍ଷ ମଧ୍ୟରେ ସ୍ଥିର କରିଥା'ନ୍ତି । ଭାଷାର ବୟସକୁ ମଧ୍ୟ ସେମାନେ ହିସାବ କରି ଖ୍ରୀ. ପୂ ୬୫୦୦ ବର୍ଷ ମଧ୍ୟରେ ଅବସ୍ଥାପିତ କରିଥା'ନ୍ତି । ସେମାନଙ୍କ ମତରେ ଆରମ୍ଭରେ ମଣିଷ ସମାଜ ହୁଏତ କ୍ଷୁଦ୍ର କ୍ଷୁଦ୍ର ଦଳରେ ବସବାସ କରୁଥିଲେ ଏବଂ ସେମାନଙ୍କ ଭିତରେ ଭାବର ଆଦାନପ୍ରଦାନ ନିମନ୍ତେ ସେମାନେ ହୁଏତ ସୀମିତ ସଂଖ୍ୟକ ଭାଷା-ସଙ୍କେତ ବ୍ୟବହାର କରୁଥିଲେ । କିନ୍ତୁ କାଳକ୍ରମେ ବିଭିନ୍ନ ଦଳ ପରସ୍ପରର ସମ୍ପର୍କରେ ଆସିବା ପରେ ଓ ସେମାନଙ୍କ ଭିତରେ ସମ୍ପର୍କ ଓ ସହାବସ୍ଥାନ ସ୍ଥାପିତ ହେବା ପରେ ସେମାନଙ୍କର ଜୀବନ-ଧାରଣର ପଦ୍ଧତି ଅଧିକ ଜଟିଳ ହେଲା । ଭାବପ୍ରକାଶ ନିମନ୍ତେ ସେମାନେ ହୁଏତ ଅଧିକ ଜଟିଳ ଭାଷା-ସଙ୍କେତର ଆବଶ୍ୟକତା ଅନୁଭବ କଲେ । ତେଣୁ ଅନୁମାନ କରଯାଇପାରେ ଯେ ମଣିଷ ସମାଜରେ ଆରମ୍ଭବେଳେ ଭାଷା-ସଙ୍କେତଗୁଡ଼ିକ କେବଳ ଦୃଶ୍ୟ-ସଙ୍କେତ ହୋଇ ରହିଥିବ ଏବଂ କାଳକ୍ରମେ ଯେତେବେଳେ ଜଟିଳ ଭାବପ୍ରକାଶ ପାଇଁ ଏଗୁଡ଼ିକ ଯଥେଷ୍ଟ ହୋଇ ନଥିବ, ସେତେବେଳେ ମଣିଷର ମୁଖ-ନିଃସୃତ ଧ୍ୱନିଗୁଡ଼ିକୁ ଏହି ଉଦ୍ଦେଶ୍ୟରେ ବ୍ୟବହାର କରିବା ପାଇଁ ଉଦ୍ୟମ ହୋଇଥିବ ।

ଭାଷାର ଉତ୍ପତ୍ତି ସମ୍ବନ୍ଧରେ ବିଭିନ୍ନ ଭାବରେ କଳ୍ପନା କରଯାଇଥିବା ଦେଖାଯାଏ । କେତେକ ମନେ କରନ୍ତି ଯେ, ଭାଷା ହେଉଛି ଈଶ୍ୱରଙ୍କ ଦାନ, ଈଶ୍ୱର ଇଚ୍ଛା କଲେ ଭାଷା ଜନ୍ମଲାଭ କରୁ ଏବଂ ଭାଷା ଜନ୍ମ ହେଲା । ଇଜିପ୍ଟର ଦାର୍ଶନିକମାନଙ୍କ ପାଇଁ ଭଗବାନ ଥଥ ମଣିଷକୁ କହିବା ଓ ଲେଖିବାର ଶକ୍ତି ପ୍ରଦାନ କରିଥିଲେ ଏବଂ ବେବିଲୋନିଆନଙ୍କ ମତରେ ଭଗବାନ ନାବୁ ମଣିଷକୁ ଏହି ଶକ୍ତି ଦେଇଥିଲେ । ଚୀନ ଦେଶର

ଦାର୍ଶନିକମାନେ ସ୍ୱର୍ଗରୁ ପ୍ରେରିତ ଏକ କଚ୍ଛପର ପିଠରେ ଚିହ୍ନିତ ଥିବା କିଛି ଲେଖାରୁ ଭାଷାର ଲିଖିତ ରୂପ ସୃଷ୍ଟି ହୋଇଥିବା ବିଶ୍ୱାସ କରନ୍ତି । ହିନ୍ଦୁମାନେ ମନେକରନ୍ତି ଯେ, ଭାଷା ମଣିଷ ପାଇଁ ବ୍ରହ୍ମାଙ୍କର ଦାନ । ସକ୍ରେଟିସ ଭାବୁଥିଲେ ଯେ ପ୍ରାକୃତିକ ଧ୍ୱନ୍ୟାନୁକରଣ ହିଁ ଭାଷା ସୃଷ୍ଟିର ମୂଳ । କିନ୍ତୁ ପ୍ରକୃତରେ ବିଭିନ୍ନ ଭାଷାରେ ବିଭିନ୍ନ ଭାବରେ ଧ୍ୱନ୍ୟାକରଣ କରାଯାଏ । ପ୍ଲାଟୋ ଭାବୁଥିଲେ ପୃଥିବୀରେ ଏକ ସର୍ବସଂପୂର୍ଣ୍ଣ ଭାଷା ଅଛି, ଯାହା ମଣିଷକୁ ହିଁ ଆବିଷ୍କାର କରିବାକୁ ପଡ଼ିବ । ପୁଣି ବି କେହି ମନେକରୁଥିଲେ ଯେ, ପୃଥିବୀରେ ଥିବା ବାହ୍ୟବସ୍ତୁକୁ ପ୍ରକାଶ କରିବା ପାଇଁ ମଣିଷ ଭିତରେ ଥିବା ସହଜାତ ପ୍ରବୃତ୍ତିରୁ ହିଁ ଭାଷାର ସୃଷ୍ଟି । କିନ୍ତୁ ଭାଷାର ଏପରି ଇତିହାସକୁ ଅବଲମ୍ବନ କରି ଭାଷାସୃଷ୍ଟିର ମୂଳ ଜାଣିବା ଆଦୌ ସମ୍ଭବ ନୁହେଁ ।

ଭାଷାର ଉତ୍ପତ୍ତି ଯେବେ ଆଉ ଯେପରି ଭାବେ ହେଉଥାଉନା କାହିଁକି, ଭାଷା ଯେ କେବଳ ଇତିହାସର ବିଷୟବସ୍ତୁ ନୁହେଁ ଏବଂ ଏହା ମନୁଷ୍ୟର ଇନ୍ଦ୍ରିୟଗ୍ରାହ୍ୟ ପ୍ରତ୍ୟକ୍ଷ ଅନୁଭୂତିର ବିଷୟ, ଏ କଥା ସମସ୍ତେ ସ୍ୱୀକାର କରିବେ । ସମାଜ ଭିତରେ ବାସ କରୁଥିବା ମଣିଷମାନଙ୍କର ସମ୍ପର୍କ ଯେପରି ଜଟିଳ, ଭାଷା ମଧ୍ୟ ସେହିପରି ଏକ ଜଟିଳ ବିଷୟ ।

ଭାଷାବିତ୍‌ମାନେ ସ୍ୱୀକାର କରନ୍ତି ଯେ, ଭାଷା ଏକ ଜଟିଳ ପଦ୍ଧତି । ଏହି ଜଟିଳ ପଦ୍ଧତିର ଦୁଇଟି ସ୍ତର ଅଛି । ଗୋଟିଏ ହେଉଛି, ଏହାର ସାର୍ବଜନୀନ ସାଧାରଣ ସ୍ତର—ଏହା ଆଦର୍ଶ ସ୍ଥାନୀୟ । ଏହା ହେଉଛି ଭାଷାର ସ୍ଥିର, ସ୍ୱୟଂସଂପୂର୍ଣ୍ଣ ଓ ସର୍ବକ୍ଷମ ସ୍ତର, ଯାହାକୁ ଓଡ଼ିଆରେ କୁହାଯାଇପାରେ 'ଭାଷା', ଇଂରାଜୀରେ କୁହାଯାଇଛି 'ଲାଙ୍ଗ୍ୟୁ' । ଅନ୍ୟଟି ହେଉଛି ଭାଷାର ପରିବର୍ତ୍ତନଶୀଳ ସ୍ତର, ଯାହା ଭାଷାକୁ ଗତିଶୀଳ କରି ସମ୍ପାଦନକ୍ଷମ କରିଥାଏ, ଯାହା ସାହାଯ୍ୟରେ ପ୍ରତ୍ୟେକ ଲୋକ ଅନ୍ୟ ଲୋକ ସାଙ୍ଗରେ କଥାବାର୍ତ୍ତା କରିପାରେ । ଏହାକୁ ଓଡ଼ିଆରେ କୁହାଯାଇପାରେ 'କଥା', ଇଂରାଜୀରେ କୁହାଯାଇଛି 'ପାରୋଲ୍' । ଭାରତୀୟ ପରଂପରାରେ ଭାଷାର ଦୁଇ ନ୍ୟୂନତମ ଏକକ ହେଉଛି ଧ୍ୱନି ଓ ସ୍ଫୋଟ । ଭାଷାପଦ୍ଧତିରେ ଭାଷା ଓ କଥା ମଧ୍ୟରେ ଥିବା ପାର୍ଥକ୍ୟକୁ ଦର୍ଶାଇବାକୁ ଯାଇ ଡକ୍ଟର ବିଜୟପ୍ରସାଦ ମହାପାତ୍ର କହନ୍ତି, 'ସ୍ଥୂଳରେ କଥା ହେଉଛି ଧ୍ୱନିସର୍ବସ୍ୱ, ଯାହା ପ୍ରାକୃତ, ଅନିତ୍ୟ, ବ୍ୟକ୍ତ ଓ ବ୍ୟଞ୍ଜିତ, କିନ୍ତୁ ଭାଷା ହେଉଛି ସ୍ଫୋଟସର୍ବସ୍ୱ ଯାହା ଅପ୍ରାକୃତ, ନିତ୍ୟ, ଅବ୍ୟକ୍ତ, ବ୍ୟଞ୍ଜକ ଓ ଅବିକାରୀ ।

ଭାଷାତତ୍ତ୍ୱ କ୍ଷେତ୍ରରେ ଭାରତୀୟ ବ୍ୟାକରଣକାରମାନଙ୍କର ଶବ୍ଦ-ସ୍ଫୋଟ ତଥ୍ୟ ପ୍ରକାଶନ ଏହି ବିଜ୍ଞାନକୁ ସେମାନଙ୍କର ସର୍ବଶ୍ରେଷ୍ଠ ଦାନ । ଏହି ଧାରଣା ପୃଥିବୀର ସବୁ ପ୍ରକାର ଅତ୍ୟାଧୁନିକ ଭାଷାତାତ୍ତ୍ୱିକ ଚିନ୍ତାଧାରାର ଏକମାତ୍ର ପୃଷ୍ଠଭୂମି ହୋଇରହିଛି । ମୋଟ ଉପରେ କହିବାକୁ ଗଲେ ଭାଷା ଓ କଥା ଉଭୟକୁ ନେଇ ହିଁ ପୃଥିବୀର ପ୍ରତ୍ୟେକ ଭାଷା ଗଠିତ ।

କଥିତ ଓ ଲିଖିତ ଭାବରେ ଭାଷାର ଦୁଇଟି ପ୍ରଧାନ ପ୍ରକାଶ୍ୟ ରୂପ ଅଛି । ଭାଷା ପ୍ରୟୋଗ କ୍ଷେତ୍ରରେ ଦୁଇଟିଯାକ ରୂପର ବିଶେଷ ଆବଶ୍ୟକତା ଓ ପ୍ରଚଳନ ରହିଛି । ଭାଷାଗୁଡ଼ିକର କଥିତ ଓ ଲିଖିତ ରୂପ ତଥା ଧ୍ୱନି ଓ ଅକ୍ଷର ମଧ୍ୟରେ କେତେକ ସ୍ଥଳରେ ସମ ଅନୁପାତରେ ସମାନତା ପରି-ଲକ୍ଷିତ ହେଲେ ମଧ୍ୟ ଅଧିକାଂଶ ସ୍ଥଳରେ ଏହି ସମାନତା ସମାନୁପାତରେ ରହି ନଥାଏ । ଉଦାହରଣ ସ୍ୱରୂପ, ଓଡ଼ିଆରେ କଥା କହିଲାବେଳେ ଆମେ କହୁ ଭୁଲ୍, ରମେଶ୍, ନମସ୍କାର୍, ସ୍କୁଲ୍; କିନ୍ତୁ ଲେଖିଲା ବେଳେ ଲେଖୁ ଭୁଲ, ରମେଶ୍ ନମସ୍କାର, ସ୍କୁଲ ଇତ୍ୟାଦି । ସେହିପରି ବହୁ ଭାଷାର ସ୍ୱତନ୍ତ୍ର ଲିଖନ ରୂପ ତଥା ଲିପିଥିବା ବେଳେ ଏକାଧିକ ଭାଷା ପାଇଁ ଗୋଟିଏ ଲିପିର ପ୍ରଚଳନ ମଧ୍ୟ ରହିଥାଏ । ବଙ୍ଗଳା, ଅସମିୟା ଓ ମଣିପୁରୀ ଭାଷା-ଲିପି ଗୋଟିଏ; ହିନ୍ଦୀ, ମରାଠୀ ଭାଷାର ଲିପି ଗୋଟିଏ; ପୁଣି ଏକାଧିକ ଇଉରୋପୀୟ ଭାଷା ରୋମାନ ଲିପି ଗ୍ରହଣ କରିଛନ୍ତି । ଓଡ଼ିଆ ଭାଷାର ଲିପିକୁ ବର୍ତ୍ତମାନ କୁଭି ପରି କେତେକ ଆଦିବାସୀ ଭାଷାର ଲିପି ପାଇଁ ଗ୍ରହଣ କରାଯାଇଛି ।

ଭାଷାକୁ ପ୍ରକାଶ କରିବାର କ୍ଷମତା ଯେପରି ମଣିଷର ଅଛି, ତାହାକୁ ପ୍ରୟୋଗ କରିବାର କ୍ଷମତା ଓ ଦକ୍ଷତା ମଧ୍ୟ ତାହାର ସେହିପରି ଅଛି । ଭାଷା ପ୍ରୟୋଗ କରିପାରିବାର କ୍ଷମତା ହିଁ ମଣିଷକୁ ଠିକ୍ ଓ ଭୁଲ ଭାଷା ପ୍ରୟୋଗ ତଥା ବ୍ୟାକରଣିକ ଓ ଅବ୍ୟାକରଣିକ ଭାଷା ପ୍ରୟୋଗର ପାର୍ଥକ୍ୟକୁ ସୂଚାଇ ଦେଇଥାଏ । ଭାଷା ପ୍ରୟୋଗ କ୍ଷମତା ଏବଂ ଭାଷା ସଚେତନଶୀଳତା ମଣିଷକୁ ବିଭିନ୍ନାର୍ଥକ କଥା ମଧ୍ୟରୁ ଉପଯୁକ୍ତ ଅର୍ଥଟିକୁ ବାଛିନେଇ କ୍ଷେତ୍ର ବିଶେଷରେ ଠିକ୍ କଥାଟିକୁ ଠିକ୍ ଭାବରେ କହିବାକୁ ସକ୍ଷମ କରାଇଥାଏ । ଜଣେ ସଫଳ ଭାଷା ପ୍ରୟୋଗକାରୀ ଯେପରି ବ୍ୟାକରଣିକ ବାକ୍ୟସମୂହ ଠିକ୍ ଭାବରେ ପ୍ରୟୋଗ କରିବାକୁ ଜାଣେ, ସେହିପରି ବିଭିନ୍ନ ବିଷୟରେ ଭାଷାରେ ବ୍ୟବହୃତ ହେଉଥିବା ବ୍ୟାକରଣିକ

ଓ ଅବ୍ୟାକରଣିକ ବାକ୍ୟ ପ୍ରୟୋଗକୁ ମଧ୍ୟ ଧରିପାରେ । ପ୍ରକୃତରେ ଭାଷା ପ୍ରୟୋଗକାରୀର ଭାଷାପ୍ରୟୋଗ କ୍ଷମତା ତା'ର ଭାଷାତାତ୍ତ୍ୱିକ କ୍ଷମତାକୁ ହିଁ ପ୍ରକାଶ କରିଥାଏ । ଭାଷା-ବ୍ୟବହାରକାରୀର ଭାଷା ପ୍ରୟୋଗ କ୍ଷମତା ଓ ତା'ର ଭାଷାତାତ୍ତ୍ୱିକ କ୍ଷମତା ଏକସମୟରେ ସମାନ ଭାବରେ ପ୍ରକାଶ ପାଇଥାଏ । ସେଥିପାଇଁ ସେ ଭାଷା-ଗଠନର ନିୟମ ଓ ଭାଷା-ପ୍ରୟୋଗର ନିୟମକୁ ଏକସମୟରେ ଆୟତ୍ତ କରିପାରେ । ବକ୍ତା ଓ ଶ୍ରୋତା ପରି-ପ୍ରେକ୍ଷୀରେ ସମାଜର ଭାଷା ସମ୍ପର୍କ ସ୍ଥାପିତ ହୁଏ । ତେଣୁ ବ୍ୟକ୍ତି ଓ ସମାଜ ସହିତ ଭାଷା ଓତପ୍ରୋତ ଭାବରେ ଜଡ଼ିତ ।

ଭାଷା ସମ୍ବନ୍ଧୀୟ ସମସ୍ତ ଆଲୋଚନା ହେଉଛି ଭାଷାତତ୍ତ୍ୱର ବିଷୟବସ୍ତୁ । ଭାଷା ବିଜ୍ଞାନ ହେଉଛି ମଣିଷର ଭାଷାକୁ ଆଧାର କରି ରହିଥିବା ଶୃଙ୍ଖଳିତ ଭାଷା ପଦ୍ଧତିର ବୈଜ୍ଞାନିକ ବିଶ୍ଳେଷଣ । ଅର୍ଥାତ୍ ଭାଷା ବିଜ୍ଞାନରେ ଭାଷା ନିର୍ମାଣ ପଦ୍ଧତିର ହିଁ ଅନୁଶୀଳନ କରଯାଏ । ଭାଷାର କଥିତ ରୂପକୁ ଭାଷା-ବିଜ୍ଞାନରେ ବିଶ୍ଳେଷଣ କରାହୁଏ । ଭାଷା-ବିଜ୍ଞାନର ଦୁଇ ପ୍ରଧାନ ଉଦ୍ଦେଶ୍ୟ ମଧ୍ୟରୁ ପ୍ରଥମଟି ହେଉଛି ଭାଷା ପଦ୍ଧତିର ବିଶ୍ଳେଷଣ ଓ ଭାଷା ସମ୍ବନ୍ଧୀୟ ତଥ୍ୟ ଓ ତତ୍ତ୍ୱ ପରିବେଷଣ ଏବଂ ଅନ୍ୟଟି ହେଉଛି ପରିବେଷିତ ତଥ୍ୟ ଅବଲମ୍ବନରେ ଏକ ବା ଏକାଧିକ ଭାଷାର ବିଶ୍ଳେଷଣ ଓ ବର୍ଣ୍ଣନା । ଏଣୁ ଏହାକୁ ବର୍ଣ୍ଣନାତ୍ମକ ଭାଷା-ବିଜ୍ଞାନ ବୋଲି ମଧ୍ୟ କୁହାଯାଇଥାଏ ।

ଏକ ନିର୍ଦ୍ଦିଷ୍ଟ ଭାଷା ବା ଏକାଧିକ ଭାଷାର ଅତୀତକୁ ଅବଲମ୍ବନ କରି ଐତିହାସିକ ଅନୁଶୀଳନ କରଯାଏ । ଭାଷାଗୁଡ଼ିକର ଐତିହାସିକ ଅନୁଶୀଳନରେ କୌଣସି ଏକ ନିର୍ଦ୍ଦିଷ୍ଟ ସମୟସୀମାକୁ ଧରି ଏହି ଅନୁ-ଶୀଳନ କରଯାଇପାରେ ବା ଭାଷା ଉପାଦାନ ସୁଲଭ ହେଲେ ଯେତେଦୂର ପର୍ଯ୍ୟନ୍ତ ଅତୀତରେ ଅଗ୍ରସର ହୋଇ ହେବ, ସେତେଦୂର ପର୍ଯ୍ୟନ୍ତ ଏହି ଅନୁଶୀଳନକୁ ପ୍ରସାରିତ କରଯାଇପାରେ । ଭାଷାମାନଙ୍କର ଏହି ପ୍ରକାର ଐତିହାସିକ ଅନୁଶୀଳନକୁ 'ଅତୀତ କାଳାନୁସାରୀ' ଭାଷା ଆଲୋଚନା ବୋଲି ପାଶ୍ଚାତ୍ୟ ଭାଷାବିତ୍ ଡ଼. ସସର ନାମକରଣ କରିଛନ୍ତି । ପ୍ରଚଳିତ ସମକାଳୀନ କୌଣସି ଏକ ନିର୍ଦ୍ଦିଷ୍ଟ ଭାଷା ବା ନିର୍ଦ୍ଦିଷ୍ଟ ଏକାଧିକ ଭାଷା-ମାନଙ୍କର ବର୍ତ୍ତମାନକାଳୀନ ଭାଷାନୁଶୀଳନ କରଯାଇଥାଏ । ଏହା ଲିଖିତ ବା କଥିତ, ଭାଷାର ଯେ କୌଣସି ରୂପକୁ ଅବଲମ୍ବନ କରି

ହୋଇପାରେ । ଭାଷାଗୁଡ଼ିକର ଏହି ପ୍ରକାର ଅନୁଶୀଳନକୁ ଡ... ସସୁର 'ନିର୍ଦ୍ଦିଷ୍ଟ କାଳାନୁସାରୀ' ଭାଷା ଆଲୋଚନା କହିଛନ୍ତି । ସାଧାରଣତଃ ବର୍ଣ୍ଣନାତ୍ମକ ପଦ୍ଧତିରେ ନିର୍ଦ୍ଦିଷ୍ଟ କାଳାନୁସାରୀ ଭାଷାନୁଶୀଳନ ହୋଇଥାଏ । ତୁଳନାତ୍ମକ ପଦ୍ଧତିରେ ତୁଳନାମୂଳକ ଭାବରେ ଏକାଧିକ ଭାଷାକୁ ନେଇ ଉଭୟ ଅତୀତକାଳାନୁସାରୀ ବା ନିର୍ଦ୍ଦିଷ୍ଟକାଳାନୁସାରୀ ଭାଷାନୁଶୀଳନ ମଧ୍ୟ କରଯାଇଥାଏ । ଏପରି ଭାଷାନୁଶୀଳନକୁ ତୁଳନାତ୍ମକ ଭାଷାବିଜ୍ଞାନ ନାମକରଣ କରଯାଇଛି ।

ଭାବ ପ୍ରକାଶ ଓ ଭାବ ବିନିମୟ ପାଇଁ ମଣିଷ କହୁଥିବା ଭାଷା ହେଉଛି ସ୍ୱେଚ୍ଛାକୃତ ଭାବରେ ଉଚ୍ଚାରଣ କରଯାଉଥିବା କେତେକ ଧ୍ୱନି ପଦ୍ଧତି । ଉଚ୍ଚାରିତ ଧ୍ୱନିଗୁଡ଼ିକର ଶୃଙ୍ଖଳିତ ସମ୍ବନ୍ଧହିଁ ପ୍ରତ୍ୟେକ ଭାଷାର ଧ୍ୱନି, ଶବ୍ଦ, ବାକ୍ୟ, କଥୋପକଥନ ଏବଂ ଅର୍ଥ ମାଧ୍ୟମରେ ପ୍ରକାଶ ପାଏ । ଭାଷାତତ୍ତ୍ୱର ବ୍ୟାପକ ପରିସର ମଧ୍ୟରେ ଭାଷା ସମ୍ବନ୍ଧୀୟ ସମସ୍ତ ଆଲୋଚନା ଅନ୍ତର୍ଭୁକ୍ତ ହେବା ଫଳରେ ଭାଷା ଆଲୋଚନା ଆଜି ମଣିଷର ଜ୍ଞାନରାଜ୍ୟରେ ଏକ ବିଶେଷ ସ୍ଥାନ ଅଧିକାର କରି ବସିଛି ।

ଭାଷା ଆଲୋଚନାର ଏହି ପୃଷ୍ଠଭୂମି ଉପରେ ଓଡ଼ିଆ ଭାଷାତତ୍ତ୍ୱ ସମ୍ବନ୍ଧରେ କିଞ୍ଚିତ ଆଲୋକପାତ କରଯାଇପାରେ ।

ଓଡ଼ିଆ ଭାଷା ବହୁ ପ୍ରାଚୀନ ବୋଲି ପ୍ରମାଣିତ । ଓଡ଼ିଶାରେ ଆର୍ଯ୍ୟ-ବସତି ଖ୍ରୀ.ପୂ. ୩ୟ ଶତକରେ ସ୍ଥାପିତ ହୋଇଥିବାର ସୂଚନା ଅଶୋକଙ୍କ ଧଉଳି ଓ ଜଉଗଡ଼ ଶିଳାଲେଖରୁ ମିଳେ । ଖ୍ରୀ.ପୂ. ୧ମ ଶତାବ୍ଦୀ ଖାରବେଳଙ୍କ ଶିଳାଲେଖରେ 'ବାଟ' 'ପଥର' ପ୍ରଭୃତି ଶବ୍ଦର ପ୍ରୟୋଗରୁ ଓଡ଼ିଆ ଭାଷାର ଉନ୍ମେଷର ସୂଚନା ମିଳିଥାଏ । ତା'ପରେ ଖ୍ରୀଷ୍ଟ ୯ମ ଓ ୧୦ମ ଶତାବ୍ଦୀର ସଂସ୍କୃତ ଶିଳାଲେଖରେ ଓଡ଼ିଆ ଶବ୍ଦର ବ୍ୟବହାର ଦୃଷ୍ଟିଗୋଚର ହୁଏ । ଏକାଦଶ ଶତାବ୍ଦୀର 'ରଜାଙ୍କୁ ଉକତି କରୁଣ ଅଛନ୍ତ ଭୋ କୁମାର ଶେଣ' ଇତ୍ୟାଦିରୁ ଓଡ଼ିଆ ଭାଷାର ସମ୍ପୂର୍ଣ୍ଣ ବିକଶିତ ରୂପର ସୂଚନା ମିଳିଛି । ୧୦୫୧ ଖ୍ରୀଷ୍ଟାବ୍ଦର ଉରଜାମ ଶିଳାଲେଖ ହେଉଛି ଓଡ଼ିଆ ଭାଷାରେ ମିଳୁଥିବା ପ୍ରାଚୀନତମ ଶିଳାଲେଖ ।

ଆଧୁନିକ ଭାରତୀୟ ଆର୍ଯ୍ୟ ଭାଷା ଭାବରେ ଓଡ଼ିଆ ଭାଷା ଇଣ୍ଡୋ-ଇଉରୋପୀୟ ଭାଷାଗୋଷ୍ଠୀର ପୂର୍ବ ଉପଶାଖାର ଏକ ସଭ୍ୟ । ମଧ୍ୟ-

ଭାରତୀୟ-ଆର୍ଯ୍ୟ ଭାଷା ଭାବରେ ବିକାଶ ଲାଭ କରୁଥିବା ପ୍ରୋଟୋ-ଓଡ଼ିଆ-ବଙ୍ଗଳା-ଅସମୀୟା ଭାଷାରେ ଲେଖାଯାଇଥିବା ବୌଦ୍ଧଗାନ ଓ ଦୋହାରୁ କାଳକ୍ରମେ ଓଡ଼ିଆ ଭାଷାର ସ୍ୱରୂପ ଗଠିତ ହୋଇଛି । 'ବୌଦ୍ଧଗାନ ଓ ଦୋହା'ର ସମୟକୁ ଭାଷାବିତ୍‌ମାନେ ଖ୍ରୀଷ୍ଟ ୫ମଠାରୁ ୧୦ମ ଶତାବ୍ଦୀ ମଧ୍ୟରେ ନିର୍ଣ୍ଣୟ କରିଥାନ୍ତି । ଭାଷାର ଅତୀତ-ପୁନର୍ଗଠନ ଭିତ୍ତିରେ ଓଡ଼ିଆ ଭାଷା ଏହାର ଅନ୍ୟ ପୂର୍ବାଞ୍ଚଳୀୟ ଭାଷା ବଙ୍ଗଳା ଓ ଅସମିୟାଠାରୁ ପ୍ରାଚୀନତର ବୋଲି ଭାଷାବିତ୍‌ମାନେ ପ୍ରମାଣ କରି କହିଛନ୍ତି ।

ଓଡ଼ିଆ ଭାଷା ବହୁ ପ୍ରାଚୀନ ହେବା ସତ୍ତ୍ୱେ ଏ ଭାଷା ଗଠନମୂଳକ ଆଲୋଚନା ଆରମ୍ଭ ହୋଇଛି ଏଇ ମାତ୍ର ପ୍ରାୟ ୨୦୦ ବର୍ଷ ତଳେ । ବିଦେଶୀମାନଙ୍କ ଓଡ଼ିଆ ଭାଷା ଶିକ୍ଷା ଉଦ୍ଦେଶ୍ୟରେ ଏ ଭାଷାର ପ୍ରଥମ ବ୍ୟାକରଣ ରଚନା କରିଥିଲେ ବ୍ରିଟିଶ ପ୍ରଶାସକ ଜମ୍‌ସ ସଟନ୍ । ବିଦେଶୀ ହେଲେ ହେଁ ସଟନ ହିଁ ପ୍ରଥମ କରି ଏ ଭାଷାର ଗଠନ ବର୍ଣ୍ଣନା କରିବାକୁ ପ୍ରଥମ ପ୍ରୟାସ କରିଥିଲେ । କିନ୍ତୁ ଜଣେ ବିଦେଶୀ ଭାବରେ ଏ ଭାଷାର ବ୍ୟାକରଣ ରଚନା କରିବା ତାଙ୍କ ପକ୍ଷରେ ଥିଲା ଏକ ଦୁରୂହ ପ୍ରୟାସ । ସେଥିପାଇଁ ସଟନ୍‌ଙ୍କ ରଚିତ ଓଡ଼ିଆ ବ୍ୟାକରଣ ଥିଲା ଯେପରି ବିଶୃଙ୍ଖଳିତ, ସେହିପରି ତ୍ରୁଟିପୂର୍ଣ୍ଣ । ଉନବିଂଶ ଶତାବ୍ଦୀରେ ସଟନ୍‌ଙ୍କ ରଚିତ ଓଡ଼ିଆ ବ୍ୟାକରଣକୁ ତାଙ୍କ ପରବର୍ତ୍ତୀ ସମୟରେ ସେହିପରି ତ୍ରୁଟିପୂର୍ଣ୍ଣ-ଭାବରେ ଅନୁସରଣ କରି ବ୍ୟାକରଣମାନ ରଚନା କରିଥିଲେ ଲେସି, ମାଲଟବୀ, ହାଲେମ, ଆଣ୍ଡରସନ ଓ ହୋର୍ଣ୍ଣେଲ ପ୍ରଭୃତି ବିଦେଶୀଗଣ ।

କିନ୍ତୁ ସେଇ ଉନବିଂଶ ଶତାବ୍ଦୀରେ ଓଡ଼ିଆ ଭାଷାର ଉତ୍ପତ୍ତି ଓ ଗଠନକୁ ଐତିହାସିକ ଭିତ୍ତିରେ ଅପେକ୍ଷାକୃତ ଶୃଙ୍ଖଳିତ ଭାବରେ ବର୍ଣ୍ଣନା କରିବାକୁ ଉଦ୍ୟମ କରିଥିଲେ ଜନ ବୀମ୍‌ସ୍ । ଅନ୍ୟ ଛଅଟି ଆଧୁନିକ ଭାରତୀୟ ଭାଷା, ହିନ୍ଦୀ, ପଞ୍ଜାବୀ, ସିନ୍ଧୀ, ଗୁଜୁରାଟୀ, ମରାଠୀ ଓ ବଙ୍ଗଳା ସହିତ ତୁଳନାମୂଳକ ଭାବରେ ସେ ଓଡ଼ିଆ ଭାଷାର ଗଠନକୁ ଉପସ୍ଥାପନ କରିଥିଲେ ତାଙ୍କ 'ତୁଳନାତ୍ମକ ବ୍ୟାକରଣ'ରେ । ବୀମ୍‌ସ ତାଙ୍କ 'ତୁଳନାତ୍ମକ ବ୍ୟାକରଣ'ରେ ପ୍ରଚଳିତ ସମକାଳୀନ ଭାଷା-ଗୁଡ଼ିକର ଗଠନ ବର୍ଣ୍ଣନା ଦେଇନାହାନ୍ତି । କିନ୍ତୁ ଭାଷାଗୁଡ଼ିକର ଉତ୍ପତ୍ତି

ଓ କ୍ରମବିକାଶ ସମ୍ବନ୍ଧୀୟ ବର୍ଣ୍ଣନା ଦେବାବେଳେ ତାଙ୍କ ବ୍ୟାକରଣରେ ସେ କେତେକ ଅତ୍ୟନ୍ତ ମୂଲ୍ୟବାନ ଭାଷାତାତ୍ତ୍ୱିକ ସୂଚନା ନିଜ ଅଜାଣତରେ ହିଁ ଦେଇଯାଇଛନ୍ତି । ଆମେରିକାର ବିଶିଷ୍ଟ ଭାଷାବିତ୍ ଜି. ଏଚ୍. ଫେୟାର ବ୍ୟାଙ୍କ୍ସ ମତ ଦିଅନ୍ତି ଯେ ଆଧୁନିକ ଭାରତୀୟ ଭାଷାମାନଙ୍କରେ ବ୍ୟବହୃତ ଶବ୍ଦଗୁଡ଼ିକୁ ତତ୍ସମ, ତଦ୍ଭବ ଓ ଦେଶଜ କ୍ରମରେ ବିଭାଗୀକରଣ କରି ବୀମସ ଭାରତୀୟ ଭାଷାନୁଶୀଳନ କ୍ଷେତ୍ରରେ ଯଥେଷ୍ଟ ଅନର୍ଥ ତଥା କ୍ଷତିସାଧନ କରିଛନ୍ତି । କିନ୍ତୁ ଏପରି କ୍ଷତିସାଧନ କରିବା ସତ୍ତ୍ୱେ ତାଙ୍କ 'ତୁଳନାତ୍ମକ ବ୍ୟାକରଣ'ରେ ହିଁ ପ୍ରଥମ କରି ବୀମସ ଭାଷାମାନଙ୍କର ଧ୍ୱନିଗତ ଓ ରୂପଗତ ବିକାଶ ସମ୍ବନ୍ଧରେ ସୂଚନା ଦେଇଯାଇଛନ୍ତି ।

ବୀମ୍ସଙ୍କ ପରେ ଅନ୍ୟୂନ ପ୍ରାୟ ଶହେ ବର୍ଷ ମଧ୍ୟରେ ଓଡ଼ିଆ ଭାଷା ପର୍ଯ୍ୟାୟକ୍ରମେ ବିଭିନ୍ନ ଓଡ଼ିଆ ବ୍ୟାକରଣକାର, ଓଡ଼ିଆ ଭାଷା ଆଲୋଚକଗଣ ଓ ଆଧୁନିକ ଭାଷାବିତ୍‌ମାନଙ୍କ ହାତରେ ବିଭିନ୍ନ ଅବସ୍ଥା ଭିତର ଦେଇ ଗତିକରି ଆସିଛି । କିନ୍ତୁ ଏହି ସମୟ ମଧ୍ୟରେ ଏ ଭାଷାକୁ ବିଜ୍ଞାନ-ସମ୍ମତ ଭାବରେ ଏକ ଶୃଙ୍ଖଳିତ ଭାଷା ପଦ୍ଧତି ରୂପେ ବର୍ଣ୍ଣନା କରିବାର ଉଦ୍ୟମ କରଯାଇ ନାହିଁ ।

ଓଡ଼ିଆ ଭାଷାତତ୍ତ୍ୱ ଆଲୋଚନାରେ ଆଜି ପର୍ଯ୍ୟନ୍ତ ମୁଖ୍ୟତଃ ଐତି-ହାସିକ ଭାଷାତତ୍ତ୍ୱର ଆଲୋଚନା ହିଁ ପ୍ରାଧାନ୍ୟ ପାଇ ଆସିଛି । ଏ କ୍ଷେତ୍ରରେ ଜନ ବୀମସଙ୍କର 'ତୁଳନାତ୍ମକ ବ୍ୟାକରଣ' ଓ ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କର 'ଓଡ଼ିଆ ଭାଷାତତ୍ତ୍ୱ' ପରେ ପରବର୍ତ୍ତୀ-କାଳରେ ଅଧିକ ପ୍ରମାଣଯୋଗ୍ୟ ଭାବରେ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀଙ୍କର 'ଇଭୋଲ୍ୟୁସନ ଅଫ ଓଡ଼ିଆ ଲାଙ୍ଗୁଏଜ ଆଣ୍ଡ ସ୍କ୍ରିପ୍ଟ' ଏବଂ 'ଡକ୍ଟର ଦେବୀ ପ୍ରସନ୍ନ ପଟ୍ଟନାୟକଙ୍କର ହିଷ୍ଟୋରିକାଲ ରିଭୀନ୍-ଷ୍ଟ୍ରକସନ୍'କୁ ଏଠାରେ ଉଲ୍ଲେଖ କରଯାଇପାରେ । କିନ୍ତୁ ବିଧିବଦ୍ଧ ଭାବରେ ଓଡ଼ିଆ ଭାଷାର ତୁଳନାତ୍ମକ ଓ ଐତିହାସିକ ଭାଷାନୁଶୀଳନ ବା ବର୍ଣ୍ଣନାତ୍ମକ ପଦ୍ଧତିରେ ବର୍ତ୍ତମାନକାଳୀନ ଭାଷା ବିଶ୍ଳେଷଣ ଏ ପର୍ଯ୍ୟନ୍ତ କରଯାଇପାରିନାହିଁ । ଓଡ଼ିଆ ଭାଷାତତ୍ତ୍ୱରେ ଓଡ଼ିଆ ଭାଷାର ପୂର୍ଣ୍ଣାଙ୍ଗ ଆଲୋଚନା କରଯାଇ ନ ଥିଲେ ମଧ୍ୟ ଏ ଭାଷାର ବିଭିନ୍ନ ଅଂଶକୁ ନେଇ ବୈଜ୍ଞାନିକ ପଦ୍ଧତିରେ ବିଶ୍ଳେଷଣ କରିବା ପାଇଁ ଭାଷାବିତ ମାନେ ବର୍ତ୍ତ-ମାନ ଆଗ୍ରହ ପ୍ରକାଶ କରୁଥିବା ଲକ୍ଷ୍ୟ କରଯାଏ । ଏ ଦିଗରେ କରଯାଇ-

ଥିବା କେତୋଟି ଉଦ୍ୟମ ଭିତରୁ ଶ୍ରୀଯୁକ୍ତ ଦେବୀ ପ୍ରସନ୍ନ ପଟ୍ଟନାୟକଙ୍କର ଓଡ଼ିଆ ଭାଷା ଓ ଭାଷାବିଜ୍ଞାନ ପୁସ୍ତକ 'ବର୍ଣ୍ଣନାତ୍ମକ ଓଡ଼ିଆ', ଶ୍ରୀଯୁକ୍ତ ବିଜୟ ପ୍ରସାଦ ମହାପାତ୍ରଙ୍କ 'ଦି ଭର୍ବ ସିସ୍ଟମ ଇନ ଓରିଆ', ଶ୍ରୀ ଗଗନେନ୍ଦ୍ର ନାଥ ଦାସଙ୍କର 'ଡେସକ୍ରିପ୍ଟିଭ ମର୍ଫୋଲୋଜି ଅଫ୍ ଓରିଆ' ପୁସ୍ତକ, ଶ୍ରୀ ବିଭୁଧେନ୍ଦ୍ର ନାଥ ପଟ୍ଟନାୟକଙ୍କର 'ଓଡ଼ିଆ ବାକ୍ୟ ବିନ୍ୟାସ', ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ ଓ ଡକ୍ଟର ଗଗନେନ୍ଦ୍ର ନାଥ ଦାସଙ୍କର 'କନଭର୍ସେସନାଲ ଓରିଆ' ଏବଂ ଶ୍ରୀମତୀ ବିଜୟଲକ୍ଷ୍ମୀ ମହାନ୍ତଙ୍କର 'ଆନ ଇଣ୍ଟେନ୍ସିଭ କୋର୍ସ ଇନ୍ ଓରିଆ' ପୁସ୍ତକକୁ ଉଲ୍ଲେଖ କରାଯାଇପାରେ । ଓଡ଼ିଆ ଭାଷାର ବିଭିନ୍ନ ଅଂଶକୁ ପୃଥକ ପୃଥକ ଭାବରେ ଅବଲମ୍ବନ କରି ହେଉଥିବା ଆଧୁନିକ ଭାଷାତାତ୍ତ୍ୱିକ ଆଲୋଚନାଗୁଡ଼ିକ ମଧ୍ୟରୁ ଅଧିକାଂଶ ବର୍ତ୍ତମାନ ସୁଦ୍ଧା ଅପ୍ରକାଶିତ ହୋଇ ରହିଛି । ଏହି ଆଲୋଚନାଗୁଡ଼ିକୁ ସର୍ବେ କରି ପ୍ରକାଶ କରିବାର ବ୍ୟବସ୍ଥା କରାଗଲେ ଏକ ସାଧୁ ଉଦ୍ୟମ ହୋଇ ପାରନ୍ତା ଏବଂ ଓଡ଼ିଆ ଭାଷାର ଉନ୍ନତିକଳ୍ପେ ବିଶେଷ ଗୁରୁତ୍ୱ ଦିଆଯାଇ ପାରନ୍ତା ।

ଓଡ଼ିଆ ଭାଷାର ପୂର୍ଣ୍ଣାଙ୍ଗ ଅନୁଶୀଳନ ନିମନ୍ତେ କେତେକ ଦିଗ ପ୍ରତି ଧ୍ୟାନ ଦେବାର ସମୟ ଆସି ପହଞ୍ଚିଛି । ଓଡ଼ିଆ ଭାଷାର ବହୁ ଉପଭାଷା ଓଡ଼ିଶା ପ୍ରଦେଶ ଭିତରେ ଓ ପ୍ରଦେଶ ବାହାରେ ରହିଛି, ଯେଉଁଗୁଡ଼ିକର ଅଧ୍ୟୟନ ପାଇଁ ବର୍ତ୍ତମାନ ସୁଦ୍ଧା ଚେଷ୍ଟା ଆରମ୍ଭ ହୋଇନାହିଁ । ଓଡ଼ିଶାରେ ଆଞ୍ଚଳିକ ଭାବରେ ଉପଭାଷାଗୁଡ଼ିକ ବିଷୟରେ ଉଲ୍ଲେଖ କରିବାର କାରଣ ହେଉଛି, ଉପଭାଷାଗୁଡ଼ିକ ମଧ୍ୟ ପ୍ରତ୍ୟେକ ସ୍ୱୟଂସଂପୂର୍ଣ୍ଣ ଭାଷା ଏବଂ ଯେପରି ଧାରଣା କରାଯାଏ ଯେ ଏଗୁଡ଼ିକ ପ୍ରଧାନ ଭାଷାର ଏକ ଅଂଶବିଶେଷ, ତା'ଠିକ୍ ନୁହେଁ । କାରଣ ଆଜି ଯାହାକୁ ପ୍ରଧାନ ଭାଷା ଭାବରେ ଗ୍ରହଣ କରାଯାଇଛି, ତାହା ମଧ୍ୟ ଦିନେ ହୁଏତ ଥିଲା ଏକ ଉପଭାଷା । ଭାଷାଗତ ବା ଭାଷାବୈଜ୍ଞାନିକ କାରଣରୁ ନୁହେଁ, ବରଂ ରାଜନୈତିକ ବା ସାଂସ୍କୃତିକ କାରଣରୁ କାଳକ୍ରମେ ଏହା ପ୍ରଧାନ ଭାଷା ହେବାର ସୌଭାଗ୍ୟ ଲାଭ କରିପାରିଛି । ଭାଷା ବୈଜ୍ଞାନିକ ଦୃଷ୍ଟିରୁ ପ୍ରଧାନ ଭାଷା ପରି ଉପଭାଷାଗୁଡ଼ିକର ନିର୍ଦ୍ଦିଷ୍ଟ ସାଙ୍ଗଠନିକ ପଦ୍ଧତି, ଶବ୍ଦାବଳୀ ଓ ଉଚ୍ଚାରଣ ପଦ୍ଧତି ରହିଛି ଏବଂ ଏଗୁଡ଼ିକ ପ୍ରତ୍ୟେକେ ମଧ୍ୟ ଭାବ-ବିନିମୟର ସଫଳ ମାଧ୍ୟମ । କେବଳ ସରକାରୀ ପୃଷ୍ଠପୋଷକତା

ଓ ସାମାଜିକ ସ୍ୱୀକୃତି ଭିତ୍ତିରେ କୌଣସି ଏକ ଅଞ୍ଚଳର ଭାଷା ବା ଉପ-ଭାଷା ପ୍ରଧାନ ଭାଷା ଭାବରେ ଗଢିଉଠେ । ଏଣୁ କୌଣସି ଭାଷାର ପୂର୍ଣ୍ଣାଙ୍ଗ ଆଲୋଚନା ପାଇଁ ସେହି ଭାଷାର ସମସାମୟିକ ଉପଭାଷାଗୁଡ଼ିକୁ ବାଦ ଦେବା ଭାଷାବୈଜ୍ଞାନିକ ଦୃଷ୍ଟିରୁ ଆଦୌ ସମୀଚୀନ ନୁହେଁ । ଓଡ଼ିଆ ଭାଷା କ୍ଷେତ୍ରରେ ମଧ୍ୟ ଏହା ପ୍ରଯୁଜ୍ୟ ହେବା ଉଚିତ ।

ଲୋକମୁଖରେ ପ୍ରଚଳିତ ବର୍ତ୍ତମାନକାଳୀନ କଥିତ ଓଡ଼ିଆ ଭାଷାର ବିଜ୍ଞାନସମ୍ମତ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ନିମନ୍ତେ ଓଡ଼ିଆ ଭାଷାତତ୍ତ୍ୱରେ ମଧ୍ୟ ଧ୍ୱନି, ରୂପ, ବାକ୍ୟ ଓ ଅର୍ଥ ଭେଦରେ ଭାଷାର ସ୍ତରୀକରଣ କରା-ଯାଇଥିବା କଥା ପୂର୍ବରୁ କୁହାଯାଇଛି ।

ଭାଷାର ମୌଳିକ ବସ୍ତୁ ଧ୍ୱନି । ଓଡ଼ିଆ ଭାଷାର ଧ୍ୱନି ତଥା ଧ୍ୱନି ସମ୍ବନ୍ଧୀୟ ସମସ୍ତ ଆଲୋଚନା 'ଓଡ଼ିଆ ଧ୍ୱନିତତ୍ତ୍ୱ'ର ବିଷୟବସ୍ତୁ । ଆଲୋଚନାର ସୁବିଧା ପାଇଁ ଧ୍ୱନିତତ୍ତ୍ୱକୁ 'ଧ୍ୱନି ବିଜ୍ଞାନ' ଓ 'ଧ୍ୱନି ପଦ୍ଧତି' ଭାବରେ ଦୁଇ ଭାଗରେ ଭାଗ କରାଯାଇଛି । ଧ୍ୱନିବିଜ୍ଞାନ ପୁଣି 'ଧ୍ୱନି ସୃଷ୍ଟି' ଓ 'ଶ୍ରୁତି ବିଜ୍ଞାନ' ଭାବରେ ଦୁଇ ଭାଗରେ ବିଭକ୍ତ । ବାଗଯନ୍ତ୍ରରୁ ନିର୍ଗତ ଧ୍ୱନି ସମୂହର ଶରୀରତାତ୍ତ୍ୱିକ ଆଲୋଚନା ଧ୍ୱନି ସୃଷ୍ଟିର ଅନ୍ତର୍ଗତ । ଭାଷା ପ୍ରକାଶ ପାଇଁ କଥା କହିବା ସମୟରେ ଶରୀରର କେତେକ ଅଙ୍ଗପ୍ରତ୍ୟଙ୍ଗକୁ ପ୍ରତ୍ୟକ୍ଷ ଭାବରେ ଚଳନା କରିବାକୁ ପଡେ । ମଣିଷ ଶରୀରର ଗଠନ ଅନୁସାରେ ଭାଷା ସୃଷ୍ଟି କରୁଥିବା ଅଙ୍ଗପ୍ରତ୍ୟଙ୍ଗକୁ ସାଧାରଣତଃ ସାର୍ବଜନୀନ ବୋଲି ମନେ କରାଯାଏ । ଭାଷାବିଜ୍ଞାନରେ ଭାଷା ସୃଷ୍ଟି କରୁଥିବା ଶରୀରର ଏହି ବିଶେଷ ଅଙ୍ଗ-ପ୍ରତ୍ୟଙ୍ଗକୁ ବାଗ୍‌ଯନ୍ତ୍ର କୁହାଯାଇଛି । ଶରୀରର ବିଭିନ୍ନ ଅଙ୍ଗ ବହୁ ବିଭିନ୍ନ କାର୍ଯ୍ୟ ସମ୍ପାଦନ ପାଇଁ ଅଭିପ୍ରେତ ହେବାପରି ବାଗଯନ୍ତ୍ର ମଧ୍ୟ ଭାଷା-ଧ୍ୱନି ସୃଷ୍ଟି ସହିତ ଅନ୍ୟାନ୍ୟ ବହୁ ବିଭିନ୍ନ କାର୍ଯ୍ୟ ସମ୍ପାଦନ ନିମନ୍ତେ ସକ୍ଷମ ।

କଥା କହିବା ସମୟରେ ମୁଖ-ନିଃସୃତ ଯେ କୌଣସି ଭାଷା ହେଉଛି କେତେକ ଧ୍ୱନି ସମଷ୍ଟିର ପରିଣତି । ଧ୍ୱନି ସୃଷ୍ଟି ତଥା ଧ୍ୱନିଗୁଡ଼ିକର ଉଚ୍ଚାରଣ ପାଇଁ ବକ୍ତାକୁ ନିଜ ଇଚ୍ଛା ମୁତାବକ ବାଗ ଯନ୍ତ୍ରର ବିଭିନ୍ନ ଅଂଶକୁ ପରିଚାଳିତ କରିବାକୁ ପଡ଼ିଥାଏ । ଧ୍ୱନି ଉଚ୍ଚାରଣ ନିମନ୍ତେ ବାଗଯନ୍ତ୍ରର

ବିଭିନ୍ନ ଅଂଶ ଯେଉଁ ଅବସ୍ଥା ଓ ଆକାର ଧାରଣ କରେ, ତାହାରି ବର୍ଣ୍ଣନା ହିଁ ଧ୍ୱନି ସୃଷ୍ଟିର ବିଷୟବସ୍ତୁ । ମଣିଷ ଶରୀରରେ ଫୁସ୍ ଫୁସ୍‌ରୁ ନିର୍ଗତ ବାୟୁ ବାଗଯନ୍ତ୍ର ମଧ୍ୟ ଦେଇ ଗତି କରିବା ସମୟରେ ବିଭିନ୍ନ ଧ୍ୱନି ଉତ୍ପନ୍ନ ହୋଇଥାଏ । ଫୁସ୍‌ଫୁସ୍‌ରୁ ନିର୍ଗତ ବାୟୁ ଦ୍ୱାର ହସିବା, କାଶିବା, ଛିଙ୍କିବା ପ୍ରଭୃତି ବିଭିନ୍ନ ସମୟରେ ଉତ୍ପନ୍ନ ହେଉଥିବା ଧ୍ୱନିଗୁଡ଼ିକୁ କିନ୍ତୁ ଭାଷା-ଧ୍ୱନି ଭାବରେ ଗ୍ରହଣ କରଯାଏ ନାହିଁ । ଭାଷା-ଧ୍ୱନିଗୁଡ଼ିକୁ ପ୍ରତ୍ୟେକ ଭାଷାର ଧ୍ୱନି ଏକକ ବା ଧ୍ୱନିଗ୍ରାମ ଭାବରେ ଗ୍ରହଣ କରଯାଏ ଏବଂ ଭାଷାରେ ଏହି ଧ୍ୱନିଗୁଡ଼ିକୁ ଏକ ନିୟମିତ ପଦ୍ଧତିରେ ପ୍ରକାଶ କରଯାଏ । ଧ୍ୱନିବିତ୍-ମାନଙ୍କ ମତରେ, 'ଭାଷା ମନୁଷ୍ୟର ମୁଖ-ନିଃସୃତ ଧ୍ୱନିମାନଙ୍କର ଏକ ନିୟମାବଦ୍ଧ ପଦ୍ଧତି ।' ପ୍ରତ୍ୟେକ ଭାଷା ପରି ଓଡ଼ିଆ ଭାଷାରେ ମଧ୍ୟ ବାଗଯନ୍ତ୍ରରୁ ନିର୍ଗତ ଭାଷା-ଧ୍ୱନିଗୁଡ଼ିକୁ କେତେକ ନିର୍ଦ୍ଦିଷ୍ଟ ଶୃଙ୍ଖଳାରେ ନିୟମାବଦ୍ଧ ଭାବରେ ଅର୍ଥପୂର୍ଣ୍ଣ ଶବ୍ଦ ଓ ବାକ୍ୟ ଆକାରରେ ପ୍ରକାଶ କରଯାଇଥାଏ ।

ବକ୍ତାଠାରେ ଧ୍ୱନି ସୃଷ୍ଟି ହେବାପରେ ଏହା ସଞ୍ଚାଳିତ ହୋଇ ଶ୍ରୋତା ନିକଟରେ ପହଞ୍ଚେ । ଧ୍ୱନି ସଞ୍ଚାଳିତ ହେବା ସମୟରେ ସୃଷ୍ଟି ହେଉଥିବା ଧ୍ୱନି ଲହରୀ ବା ତରଙ୍ଗ ସମ୍ବନ୍ଧୀୟ ବର୍ଣ୍ଣନା ହେଉଛି ଶ୍ରୁତି-ବିଜ୍ଞାନର ବିଷୟବସ୍ତୁ । ସାଧାରଣତଃ ଶ୍ରୁତି ମାପକ ଯନ୍ତ୍ର ସ୍ପେକ୍ଟ୍ରୋଗ୍ରାଫ ସାହାଯ୍ୟରେ ପରିମିତ ସମୟ ମଧ୍ୟରେ ଧ୍ୱନି ଲହରୀର କମ୍ପାଙ୍କ ଓ ପ୍ରସାରଣକୁ ମାପ କରଯାଇଥାଏ । ସମୟ ତାରତମ୍ୟ ଅନୁସାରେ ବକ୍ତା ଓ ଶ୍ରୋତା ବ୍ୟବଧାନରେ ଧ୍ୱନି ଲହରୀ ମଧ୍ୟରେ ସଂପ୍ରସାରିତ ଧ୍ୱନିଗୁଡ଼ିକର ମାତ୍ରା ହ୍ରାସ ଓ ବୃଦ୍ଧି ପରିମାପ କରିବାର ଜଟିଳ ପ୍ରକ୍ରିୟାକୁ ଶ୍ରୁତି ବିଜ୍ଞାନରେ ବର୍ଣ୍ଣନା କରଯାଏ । ଏହାଛଡ଼ା ଶ୍ରବଣ ଯନ୍ତ୍ର ସମ୍ବନ୍ଧୀୟ ଶାରୀରିକ ବର୍ଣ୍ଣନା ମଧ୍ୟ ଏଥିରେ ଅନ୍ତର୍ଭୁକ୍ତ ।

ଧ୍ୱନି ସୃଷ୍ଟି ହେବା ପରେ ଯେଉଁ ପ୍ରକ୍ରିୟା ତଥା ପଦ୍ଧତି ଅବଲମ୍ବନ କରି ଧ୍ୱନି ଭାଷା ନିର୍ମାଣର ଏକ ବିଶେଷ ଅଂଶ ଭାବରେ ପ୍ରକାଶ ପାଏ, ତାହାକୁ ଧ୍ୱନିପଦ୍ଧତି କୁହାଯାଏ । ଓଡ଼ିଆ ଧ୍ୱନିପଦ୍ଧତିରେ ୩୭ଟି ଧ୍ୱନି ଗ୍ରାମ ମଧ୍ୟରୁ ୬ଟି ସ୍ୱର, ୨ଟି ଦ୍ୱିସ୍ୱର ଓ ୩୧ଟି ବ୍ୟଞ୍ଜନ ଧ୍ୱନିକୁ ଚିହ୍ନିତ କରଯାଇଛି । ଓଡ଼ିଆ ସ୍ୱର ଓ ବ୍ୟଞ୍ଜନକୁ ପ୍ରଯତ୍ନ ସ୍ଥାନ ଓ ପ୍ରଯତ୍ନ ବିଧି

ଅନୁସାରେ ଓଡ଼ିଆ ଧ୍ୱନିପଦ୍ଧତିରେ ବର୍ଣ୍ଣନା କରଯାଏ ଏବଂ ଧ୍ୱନିଗ୍ରାମୀୟ ସର୍ବନିମ୍ନ ବିରୋଧୀ ଯୋଡ଼ା ଅନୁସାରେ ଧ୍ୱନି-ସମଷ୍ଟିରୁ ଓଡ଼ିଆ ଶବ୍ଦ ଗଠିତ ହୁଏ ।

ଭାଷା କଥିତ ବା ଲିଖିତ ଯେକୌଣସି ରୂପରେ ପ୍ରକାଶ ପାଉନା କାହିଁକି ଏହାର ଏକ ଅନ୍ତର୍ନିହିତ ଶୃଙ୍ଖଳା ତଥା ନିର୍ଦ୍ଦିଷ୍ଟ ଗଠନ ପଦ୍ଧତି ଥାଏ । ଭାଷାର ଅନ୍ତର୍ନିହିତ ଗଠନ ପଦ୍ଧତି ବିଶ୍ଳେଷଣ ତଥା ବର୍ଣ୍ଣନାର ଅନ୍ୟ ନାମ ବ୍ୟାକରଣ । ଭାଷା ଗଠନ ସମ୍ବନ୍ଧୀୟ ବ୍ୟାକରଣର ଦୁଇ ପ୍ରଧାନ ବିଭାଗ ହେଉଛି ରୂପତତ୍ତ୍ୱ ଓ ବାକ୍ୟତତ୍ତ୍ୱ ।

ଭାଷାରେ ବ୍ୟବହୃତ ଶବ୍ଦମାନଙ୍କର ଗଠନ ପଦ୍ଧତି ବର୍ଣ୍ଣନା ହିଁ ରୂପ-ତତ୍ତ୍ୱର ବିଷୟବସ୍ତୁ । ମୁଖ-ନିଃସୃତ ଭାଷାର ଅର୍ଥହୀନ ମହତ୍ତ୍ୱପୂର୍ଣ୍ଣ ଏକକ ହେଉଛି ଧ୍ୱନିଗ୍ରାମ, କିନ୍ତୁ ଅର୍ଥପୂର୍ଣ୍ଣ ନ୍ୟୂନତମ ଏକକ ହେଉଛି 'ରୂପ' ବା 'ରୂପଗ୍ରାମ' । ଭାଷାରେ ବ୍ୟବହୃତ ଶବ୍ଦର ଗଠନ ପଦ୍ଧତିକୁ ବିଶ୍ଳେଷଣ କଲେ ରୂପ ସମ୍ବନ୍ଧୀୟ ଧାରଣା ସ୍ପଷ୍ଟ ହୁଏ । ଉଦାହରଣ ସ୍ୱରୂପ 'ଆଡ଼ିର'; 'କଟକିଆ', 'ବସିଲି' ଏ ତିନୋଟି ଶବ୍ଦରୁ ପ୍ରତ୍ୟେକ ଗୋଟିଏ ଲେଖାଏଁ ସ୍ୱତନ୍ତ୍ର ଶବ୍ଦ ପରି ମନେ ହେଉଥିଲେ ମଧ୍ୟ ଏଗୁଡ଼ିକର ଗଠନରେ ଯଥା-କ୍ରମେ ଅଛି, 'ଆଡ଼ି + ର', 'କଟକ + ଇଆ' ଓ 'ବସ୍ + ଇଲ୍ + ଇ' । ଏହି ଶବ୍ଦମାନଙ୍କର ଏହି ଗଠନରେ 'ଆଡ଼ି', 'କଟକ' ଓ 'ବସ' ପ୍ରତ୍ୟେକ ହେଉଛି ଗୋଟିଏ ଲେଖାଏଁ ନ୍ୟୂନତମ 'ରୂପ' ଓ ପ୍ରତ୍ୟେକ ଅର୍ଥପୂର୍ଣ୍ଣ । ଏଗୁଡ଼ିକ ନ୍ୟୂନତମ, କାରଣ ଏଗୁଡ଼ିକୁ ଆଉ ଅଧିକ ବିଶ୍ଳେଷଣ କଲେ ଏମାନେ ଅର୍ଥହୀନ ଧ୍ୱନିଗ୍ରାମରେ ପରିଣତ ହେବେ । ଏହି ଅର୍ଥପୂର୍ଣ୍ଣ ନ୍ୟୂନତମ ରୂପ ସହିତ ଯଥାକ୍ରମେ 'ର', 'ଇଆ' ଓ 'ଇଲ' ଏବଂ 'ଇ' ପ୍ରତ୍ୟୟଯୁକ୍ତ ହୋଇ ନୂଆ ଶବ୍ଦ ଗଠିତ ହୋଇଛି । ଶବ୍ଦରେ ବ୍ୟବହୃତ ଏଇ ପ୍ରକାର ପ୍ରତ୍ୟୟଗୁଡ଼ିକ ହେଉଛି ପ୍ରତ୍ୟେକ 'ବଦ୍ଧରୂପ' ।

'ମୁକ୍ତରୂପ' ଓ 'ବଦ୍ଧରୂପ' ଭେଦରେ ରୂପ ଦୁଇପ୍ରକାର । ପ୍ରତ୍ୟେକ ଅର୍ଥପୂର୍ଣ୍ଣ ନ୍ୟୂନତମ ରୂପ ହେଉଛି 'ମୁକ୍ତରୂପ' ଓ ଏଗୁଡ଼ିକ ପ୍ରତ୍ୟେକ ଶବ୍ଦ । କିନ୍ତୁ ମୁକ୍ତରୂପ ସହିତ ଯେଉଁ ପ୍ରତ୍ୟୟଗୁଡ଼ିକୁ ଯୁକ୍ତ କରି ନୂଆ ଶବ୍ଦ ତିଆରି ହୁଏ, ସେଗୁଡ଼ିକୁ କୁହାଯାଏ 'ବଦ୍ଧରୂପ' । ବଦ୍ଧରୂପଗୁଡ଼ିକର ହୁଏତ ଅର୍ଥ ଥାଇପାରେ, କିନ୍ତୁ ଏଗୁଡ଼ିକ ନୂଆ ଶବ୍ଦ ଗଠନରେ ସହାୟକ ହୋଇ

ମୁକ୍ତରୂପ ସହିତ ଅର୍ଥପୂର୍ଣ୍ଣ ହୁଅନ୍ତି । ଏକାଧିକ ମୁକ୍ତରୂପ ଯୁକ୍ତ ହୋଇ ନୂଆ ଶବ୍ଦ ଗଠିତ ହୋଇପାରେ, କିନ୍ତୁ କେବଳ ଏକାଧିକ ବଦ୍ଧରୂପ ଯୁକ୍ତ ହୋଇ ଶବ୍ଦ ଗଠିତ ହୋଇପାରେ ନାହିଁ । ଭାଷାରେ ବ୍ୟବହୃତ ବିଭିନ୍ନ ଶବ୍ଦ ଶ୍ରେଣୀର ଗଠନକୁ ରୂପତତ୍ତ୍ୱ ସାହାଯ୍ୟରେ ବର୍ଣ୍ଣନା କରଯାଏ ।

ଭାଷାର ଧ୍ୱନିଗ୍ରାମ ଓ ରୂପଗ୍ରାମ ପରି ବାକ୍ୟ ମଧ୍ୟ ଏକ ଏକକ ଓ ଏହା ଅର୍ଥପୂର୍ଣ୍ଣ । ଓଡ଼ିଆ ବାକ୍ୟର ଦୁଇ ପ୍ରଧାନ ଭାଗ କର୍ତ୍ତାଭାଗ ଓ କ୍ରିୟାଭାଗ ମଧ୍ୟରେ କ୍ରିୟାଭାଗ ଅଧିକ ଗୁରୁତ୍ୱପୂର୍ଣ୍ଣ । କାରଣ କେବଳ ଗୋଟିଏ କ୍ରିୟାପଦ ବା କ୍ରିୟାପଦ ଦ୍ୱାରା ନିର୍ଦ୍ଦେଶିତ ଶବ୍ଦ ବା ଶବ୍ଦର ସମଷ୍ଟି ହେଉଛି ବାକ୍ୟ । 'କରୁଛି' ପରି ଗୋଟିଏ କ୍ରିୟାପଦରେ କର୍ତ୍ତା ଓ କର୍ମ ଉଭୟ ଅନୁଚ୍ଚାରିତ ରହିଛନ୍ତି । ପୁଣି ବି ଓଡ଼ିଆରେ କ୍ରିୟା-ପଦ ନ ଥାଇ ବା କ୍ରିୟା ଅନୁଚ୍ଚାରିତ ଥାଇ ବାକ୍ୟ ଗଠନ ହୋଇପାରେ । 'ସେ କିଏ', 'ତୁମ ନା କ'ଣ ? 'ମୋ ଘର କଟକ' ପ୍ରଭୃତି ବାକ୍ୟଗୁଡ଼ିକ ଏହାର ଉଦାହରଣ । ଏହାଛଡ଼ା ପ୍ରାସଙ୍ଗିକ ଭାବରେ ହଁ, ନାଇଁ, କ'ଣ, ହଉ, ବାଃ ବାଃ ପ୍ରଭୃତି ପ୍ରତ୍ୟୁତ୍ତର ବାଚକଗୁଡ଼ିକୁ ମଧ୍ୟ ବାକ୍ୟ ପଦବାଚ୍ୟ ମନେ କରାଯାଇପାରେ ।

ଭାଷା ଓ ଭାଷାତତ୍ତ୍ୱର ପରିସର ଏପରି ବ୍ୟାପକ ଓ ବୃହତ୍ ଯେ, ଏକ କ୍ଷୁଦ୍ର ପ୍ରବନ୍ଧରେ ସେ ସମ୍ବନ୍ଧରେ ବିଶେଷ ବର୍ଣ୍ଣନା ଦେବା ଆଦୌ ସମ୍ଭବ ନୁହେଁ । ଏଣୁ ଏ ପ୍ରବନ୍ଧରେ ଉଲ୍ଲିଖିତ ତଥ୍ୟଗୁଡ଼ିକୁ ଭାଷା ସମ୍ବନ୍ଧୀୟ ଅତ୍ୟନ୍ତ ସଂକ୍ଷିପ୍ତ ସୂଚନା ଭାବରେ ହିଁ ଗ୍ରହଣ କରିବା ଉଚିତ ହେବ ।

—o—

ଗ୍ରନ୍ଥ ସୂଚନା :


୧ । ଏଡ଼ୱାର୍ଡ଼ ସାପିର୍; 'ଲାଙ୍ଗୁଏଜ', ୧୯୭୧ ।

୨ । ଗୋଲକ ବିହାରୀ ଧଳ; 'ଭାଷାଶାସ୍ତ୍ର ପରିଚୟ, ୧୯୭୬ ।

୩ । ବିଜୟ ପ୍ରସାଦ ମହାପାତ୍ର; 'ଓଡ଼ିଆ ଭାଷାତାତ୍ତ୍ୱିକ ପ୍ରବନ୍ଧ, ୧୯୮୩ ।

୩ । ଗୋଲକ ବିହାରୀ ଧଳ; ଧ୍ୱନି ବିଜ୍ଞାନ, ୧୯୭୪ ।

## ଓଡ଼ିଆରେ ନାସ୍ତିବାଚକ : ଏକ ଅଲୋଚନା

ଆଧୁନିକ ଓଡ଼ିଆ ଭାଷାର ଇତିହାସ ଖୁବ୍ ବେଶୀ ଦିନ ତଳର ନ ହେଲେ ମଧ୍ୟ ଏ ଭାଷା ସୃଷ୍ଟିର ଇତିହାସ ଅତି ପୁରାତନ । କିନ୍ତୁ ଏଇ ବିକାଶମୁଖୀ ଓଡ଼ିଆ ଭାଷାର ଏକ ସ୍ୱତନ୍ତ୍ର ସମ୍ପୂର୍ଣ୍ଣ ବ୍ୟାକରଣ ଏ ପର୍ଯ୍ୟନ୍ତ ଲେଖାଯାଇ ପାରିନାହିଁ । ଓଡ଼ିଆ ଭାଷାର ବ୍ୟାକରଣ ଖୋଜିଲେ ସେଇ ପଛକୁ, ମୂଳ ସଂସ୍କୃତ ଭାଷାର ବ୍ୟାକରଣକୁ ଅନାଇବାକୁ ହୁଏ । ସଂସ୍କୃତ ବ୍ୟାକରଣକୁ ମୂଳଭିତ୍ତି କରି ଧରିଲେ ମଧ୍ୟ ଓଡ଼ିଆ ଭାଷାର ବ୍ୟାକରଣ ସଂସ୍କୃତ ବ୍ୟାକରଣ ନୁହେଁ । ଏହାର ଏକ ନିଜସ୍ୱ ବ୍ୟାକରଣ ଏଇ ଭାଷାକୁ ବୁଝିବା ପାଇଁ ଓ ବୁଝାଇବା ପାଇଁ ରହିବା ଆବଶ୍ୟକ । ପଣ୍ଡିତ ନୀଳକଣ୍ଠ ଦାସଙ୍କ ଓଡ଼ିଆ ବ୍ୟାକରଣ ଏହି ଦିଗରେ ଏବେ ମଧ୍ୟ ପ୍ରଥମ ଓ ଏକମାତ୍ର ଉଦ୍ୟମ । କିନ୍ତୁ ନିକଟ ଅତୀତରେ ପ୍ରକାଶିତ ହୋଇଥିବା ଡକ୍ଟର ଦେବୀ ପ୍ରସନ୍ନ ପଟ୍ଟନାୟକ ଓ ଡକ୍ଟର ଗଗନ ଦାସଙ୍କ ଦ୍ୱାରା ଲେଖାଯାଇଥିବା ପୁସ୍ତକ 'କନଭରସେସନାଲ ଓରିଆ'ରେ ଓଡ଼ିଆ ବର୍ଣ୍ଣନାତ୍ମକ ବ୍ୟାକରଣର ସୂଚନା ଦିଆଯାଇଛି । ଆଜି ପର୍ଯ୍ୟନ୍ତ ଯେତେ-ଗୁଡ଼ିଏ ବ୍ୟାକରଣ ପୁସ୍ତକ ଦୃଷ୍ଟିଗୋଚର ହୁଏ, ସେ ସବୁଗୁଡ଼ିକ ସଂସ୍କୃତ ବ୍ୟାକରଣକୁ ସଂପୂର୍ଣ୍ଣ ଭାବରେ ଅନୁସରଣ କରିଛନ୍ତି । ବୋଧହୁଏ ଓଡ଼ିଆ ଭାଷାର ଯେ ନିଜର ବ୍ୟାକରଣ ବା ସ୍ୱତନ୍ତ୍ର ନୀତି ନିୟମ ରହିପାରେ ଏହା ଅନେକଙ୍କୁ ଅସ୍ୱାଭାବିକ ମନେ ହେଉଥିବ ।

ଭାଷାର ବ୍ୟାକରଣ ରହିବା ସ୍ୱାଭାବିକ । ଭାଷା ଶିଖିବାକୁ ହେଲେ ଭାଷାର ବ୍ୟାକରଣ ଅର୍ଥାତ୍ ନୀତି- ନିୟମ ଜାଣିବା ଦରକାର । କିନ୍ତୁ କେବଳ ବ୍ୟାକରଣ ଜାଣିଲେ ଭାଷାଶିକ୍ଷା ଶେଷ ହୁଏ ନାହିଁ । ପୁଣି ବ୍ୟାକରଣ ଭାଷାର କ୍ରମବିକାଶ ସହିତ ସଂପୃକ୍ତ ଓ ପରିବର୍ତ୍ତନଶୀଳ । ଭାଷାର ଜନ୍ମ ଓ ବୃଦ୍ଧି ସହିତ ବ୍ୟାକରଣର ଅଙ୍ଗାଙ୍ଗୀ ସମ୍ବନ୍ଧ ରହିଛି । ଏହା ଭାଷାର ନିୟାମକ ନୁହେଁ, ଭାଷାର ବ୍ୟବହାରକୁ ବ୍ୟାକରଣ ବର୍ଣ୍ଣନା କରିବା ଆବଶ୍ୟକ । ଭାଷାର ଏକ ଧରାବନ୍ଧା ନିୟମ ନ ହୋଇ ଏହା

ପ୍ରଚଳିତ ଭାଷାର ବିଭିନ୍ନ ବ୍ୟବହାର ଓ ଅର୍ଥକୁ ବର୍ଣ୍ଣନା କରେ । ଯେଉଁ ବ୍ୟାକରଣ ଭାଷାର ବ୍ୟବହାରକୁ ବର୍ଣ୍ଣନା କରେ ତାକୁ ଭାଷାର 'ବ୍ୟବହାରିକ ବର୍ଣ୍ଣନାତ୍ମକ ବ୍ୟାକରଣ' ବୋଲି କୁହାଯାଏ । ପ୍ରକୃତ ଭାବରେ ଭାଷାର ବିଭିନ୍ନ ନିୟମକୁ ପ୍ରଚଳିତ ରୀତିରେ ବର୍ଣ୍ଣନା କରଯାଇ ନ ଥିବାରୁ ଏ ପ୍ରକାର ଆଲୋଚନା ବୋଧହୁଏ ଓଡ଼ିଆରେ ନୂତନ ଉଦ୍ୟମ ବୋଲି କୁହାଯାଇପାରେ । ଏଇ ଉଦ୍ଦେଶ୍ୟରେ 'ଓଡ଼ିଆ ନାସ୍ତିବାଚକ'ର ଏ ଆଲୋଚନା ।

'ନାସ୍ତିବାଚକ' ସବୁ ଭାଷା ପରି ଓଡ଼ିଆ ଭାଷାର ବ୍ୟାକରଣର ଏକ ପ୍ରଧାନ ଅଙ୍ଗ । ଆମେ ଭାବି ପ୍ରକାଶ କଲାବେଳେ ସମ୍ମତି ସୂଚକ, ଆଶ୍ଚର୍ଯ୍ୟ ସୂଚକ, ପ୍ରଶ୍ନବାଚକ ପ୍ରଭୃତି ଭାବ ବାକ୍ୟ ମାଧ୍ୟମରେ ପ୍ରକାଶ କରିଥାଉ । ଯଦି ଭାଷାରେ କେବଳ ଏଇପରି କେତୋଟି ଭାବ ପ୍ରକାଶ ସହିତ ନାସ୍ତି-ବାଚକର ବ୍ୟବହାର ଆଦୌ ନ ଥାନ୍ତା ତେବେ ଆମର ଭାବ ସଂପୂର୍ଣ୍ଣ ପ୍ରକାଶ ପାଇ ପାରନ୍ତା ନାହିଁ, ଏକ ଅସ୍ୱାଭାବିକ ଅବସ୍ଥା ସୃଷ୍ଟି ହୁଅନ୍ତା । କଥାବାର୍ତ୍ତା ସମୟରେ କେବଳ ପ୍ରଶ୍ନବାଚକ ଓ ସମ୍ମତି ସୂଚକ ଭାବ ପ୍ରକାଶରେ କଥା ହେଉଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଯୋଗସୂତ୍ର ରକ୍ଷା କରିବା ଅସମ୍ଭବ ହୋଇ ପଡ଼ନ୍ତା । ସେଥିପାଇଁ ନାସ୍ତିବାଚକର ବ୍ୟବହାର ସବୁ ଭାଷାର ଏକ ଅବଶ୍ୟମ୍ଭାବୀ ଅଙ୍ଗ ।

ଓଡ଼ିଆ ଭାଷାରେ ଦୁଇଟି ନାସ୍ତିବାଚକ କ୍ରିୟା ଅଛି : ନୁହେଁ ଓ ନାହିଁ । ଯେଉଁ ବାକ୍ୟରେ କ୍ରିୟାର ବ୍ୟବହାର ହୁଏ ନାହିଁ ଅର୍ଥାତ୍ ଯେଉଁ ବାକ୍ୟରେ କ୍ରିୟା ଲୁପ୍ତ ରହେ ସେପରି ବାକ୍ୟକୁ ନାସ୍ତିବାଚକ କରିବା ପାଇଁ ନୁହେଁ ନାସ୍ତିବାଚକ କ୍ରିୟା ବ୍ୟବହାର କରିବାକୁ ହୁଏ । ଇଂରାଜୀରେ ଏ ପ୍ରକାର କ୍ରିୟାବିହୀନ ବାକ୍ୟକୁ କୁହାଯାଏ Equational Sentences କିନ୍ତୁ ଓଡ଼ିଆରେ ଏପରି ବାକ୍ୟର ବ୍ୟବହାର ଥିଲେ ମଧ୍ୟ ଏହାର ନାମକରଣ ବା ବିଭାଗୀକରଣ ହୋଇ ନାହିଁ । ଏପରି ବାକ୍ୟକୁ ଓଡ଼ିଆରେ 'କ୍ରିୟା-ବିହୀନ' ବାକ୍ୟ ବୋଲି ଚିହ୍ନିତ କରଯାଇ ପାରେ ।

ଉଦାହରଣ—(୧)

ଭୁବନେଶ୍ୱର ଭଲ ସହର ।
ଭୁବନେଶ୍ୱର ଭଲ ସହର ନୁହେଁ/ନୁହଁ ।

ତୁ ସ୍କୁଲର ଛାତ୍ର ।
ତୁ ସ୍କୁଲର ଛାତ୍ର ନୁହଁ ।

ଆପଣ ଜଣେ ଓଡ଼ିଆ ଲୋକ ।
ଆପଣ ଜଣେ ଓଡ଼ିଆ ଲୋକ ନୁହଁନ୍ତି ।

ସେମାନେ ମଫସଲର ବାସିନ୍ଦା ।
ସେମାନେ ମଫସଲର ବାସିନ୍ଦା ନୁହଁନ୍ତି ।

'ନୁହେଁ'ର ପରିବର୍ତ୍ତିତ କଥିତ ରୂପ 'ନୁହ‌ଁ' ଓ ପଦ୍ୟରେ ଏହାର ବ୍ୟବହୃତ ରୂପ 'ନୁହଇ' ଏବଂ ଆଧୁନିକ ଗଦ୍ୟର ଆରମ୍ଭ ସମୟରେ ଏହାର ରୂପ ମଧ୍ୟ 'ନୁହଇ' ଥିଲା । 'ନୁହେଁ'ର ପରିବର୍ତ୍ତିତ ରୂପ 'ନୁହଁ'ରେ 'ନ୍ତି' ଯୋଗକରି ବହୁବଚନ ଓ ମାନ୍ୟାର୍ଥରେ ନୁହଁନ୍ତି କ୍ରିୟା ବ୍ୟବହାର କରଯାଏ ।

'ନାହିଁ' 'ଅଛି' ଅସ୍ତିବାଚକ ସହାୟକ କ୍ରିୟାର ନାସ୍ତି ବାଚକ କ୍ରିୟାପଦ । 'ଅଛି' ଓ 'ନାହିଁ'ର ମୂଳରୂପ ଯଥାକ୍ରମେ 'ଅଛ୍—' ଓ 'ନାହ୍ଁ—' । ଯେଉଁଠାରେ 'ଅଛି'ର ବ୍ୟବହାର ରହିଛି ତାହାକୁ ନାସ୍ତି-ବାଚକ କରିବାକୁ ନାହିଁର ବ୍ୟବହାର କରିବାକୁ ହୁଏ ।

**ଉଦାହରଣ** (୨) : ମୋର ଘର ଅଛି ।
ମୋର ଘର ନାହିଁ ।
ତା'ର ଖାଇବାକୁ ଅଛି ।
ତା'ର ଖାଇବାକୁ ନାହିଁ ।

କିନ୍ତୁ 'ଅଛ' କ୍ରିୟା ଯେଉଁଠି ଅନ୍ୟ ମୂଳ ସମାପିକା କ୍ରିୟା ଧାତୁ ସହିତ ଯୋଗ ହୋଇ ସାମାନ୍ୟ ସମ୍ପନ୍ନ ଓ ଅସମ୍ପନ୍ନ ବର୍ତ୍ତମାନ, ସାମାନ୍ୟ ଅତୀତ ଓ ସାମାନ୍ୟ ଭବିଷ୍ୟତ କାଳରେ ବ୍ୟବହୃତ ହୁଏ ସେଠାରେ ନାହ୍ଁ—କ୍ରିୟାର ଅନ୍ୟ ଏକ ବ୍ୟବହାରିକ ରୂପ 'ନ'— ମଧ୍ୟ ହୁଏ । ବାକ୍ୟରେ କର୍ତ୍ତାର କ୍ରିୟା ସହିତ ସିଧାସଳଖ ସମ୍ପର୍କ ଥିବାରୁ କର୍ତ୍ତା ସ୍ଥାନରେ ସର୍ବନାମରେ ପୁରୁଷ ଓ ବଚନ ଯୋଗ ହେଲେ 'ଅଛ୍'— କ୍ରିୟାରେ ସେହି ଅନୁସାରେ ପରିବର୍ତ୍ତନ ହୁଏ ଓ ନାସ୍ତିବାଚକ 'ନାହ୍ଁ' ଓ 'ନ'—ରେ ମଧ୍ୟ ଅନୁରୂପ ପରିବର୍ତ୍ତନ ଅନୁସରଣ କରଯାଏ ।

କିନ୍ତୁ ମୂଳ ସମାପିକା କ୍ରିୟାଧାତୁର ନାସ୍ତିବାଚକରେ ସାମାନ୍ୟ ବର୍ତ୍ତମାନ, ସାମାନ୍ୟ ଅତୀତ ଓ ସାମାନ୍ୟ ଭବିଷ୍ୟତ କାଳରେ 'ନାହିଁ' ବା ଏହାର ଅନ୍ୟ ରୂପ 'ନି' ବ୍ୟବହାର କରଯାଏ । ଏହାର କର୍ତ୍ତାରେ ପୁରୁଷ ଓ ବଚନ ଯୋଗ ହେଲେ ମଧ୍ୟ ନାସ୍ତିବାଚକ 'ନି'ର ଅନୁରୂପ ପରିବର୍ତ୍ତନ ହୁଏ ନାହିଁ । (ଉଦାହରଣ ୪ ଦ୍ରଷ୍ଟବ୍ୟ)

ଉଦାହରଣ (୩) :

| (କ) ଅଛ୍— | | ନାହ୍ଁ—(ଖ) |
|---|---|---|
| ଅଛି | ନାହିଁ | ମୁଁ ଯାଉଛି / ମୁଁ ଯାଉନି । |
| | | ସେ ଯାଉଛି / ସେ ଯାଉନି । |
| ଅଛ | ନାହଁ | ତୁମେ ଯାଇଛ / ତୁମେ ଯାଇନ । |
| ଅଛୁ | ନାହୁଁ | ଆମେ ଯାଇଛୁ / ଆମେ ଯାଇନୁ । |
| ଅଛେ | ନାହେଁ | ଆମେ ଯାଉଛେ / ଆମେ ଯାଉନେ । |
| ଅଛନ୍ତି | ନାହାନ୍ତି | ସେମାନେ ଯାଉଛନ୍ତି / ସେମାନେ ଯାଉ ନାହାନ୍ତି । |

ଉଦାହରଣ (୪) :

ମୁଁ ଖାଏ / ମୁଁ ଖାଏନି ।
ସେ ଖାଇଲା / ସେ ଖାଇଲାନି ।
ଆପଣ ଖାଇବେ / ଆପଣ ଖାଇବେନି ।
ସେମାନେ ଖାଆନ୍ତି / ସେମାନେ ଖାଆନ୍ତିନି ।

ଉଦାହରଣ (୩) ର 'ଖ' ଓ ଉଦାହରଣ (୪) କୁ ସୂତ୍ର ଦ୍ୱାରା ପ୍ରକାଶ କରି ହେବ । ଉଦାହରଣ (୩) ଖ—ସମାପିକା ମୂଳ କ୍ରିୟାଧାତୁ + କ୍ରିୟାର କାଳ + ସହାୟକ କ୍ରିୟା + ପୁରୁଷ / ବଚନ (ଅସ୍ତି / ନାସ୍ତି ବାଚକ)

ସୂତ୍ର ଅନୁସାରେ : ଖାଉଛି = ଖା + ଉ (ଅସମ୍ପନ୍ନ ବର୍ତ୍ତମାନର କାଳରୂପ) + ଛ + ଇ (ପ୍ରଥମ ପୁରୁଷ, ଏକ ବଚନର ଚିହ୍ନ) ।

ଉଦାହରଣ (୪) (୧) ଖାଏନି = ଖା + ଏ (ସମାନ୍ୟ ବର୍ତ୍ତମାନ) + ନି (ନାସ୍ତିବାଚକ) (ପୁରୁଷ / ବଚନ)

(୨) ଖାଇଲନି = ଖା + ଇଲ + ଆ + ନି

ମୂଳଧାତୁ ସାମାନ୍ୟ ପୁରୁଷ / ନାସ୍ତିବାଚକ

ଅତୀତ ବଚନ

(୩) ଖାଇବେନି = ଖା + ଇବ + ଏ + ନି

'ଅଛି' ସହାୟକ କ୍ରିୟାପଦର ଅତୀତ ଓ ଭବିଷ୍ୟତ କାଳରେ ପରିବର୍ତ୍ତନ ହୋଇ ଯଥାକ୍ରମେ 'ଥିଲ' ଓ 'ଥିବ' ହୁଏ । 'ଅଛି'ର ନାସ୍ତି-ବାଚକ ନାହିଁ ହେଲେ ମଧ୍ୟ 'ଥିଲ' ଓ ଥିବ'ର ନାସ୍ତିବାଚକ 'ନାହିଁ' ହୁଏନି । ଏହାକୁ ନାସ୍ତିବାଚକ କରିବାକୁ ହେଲେ ଅବ୍ୟୟ 'ନ'କୁ 'ଥିଲ' ଓ 'ଥିବ' ପୂର୍ବରୁ ବ୍ୟବହାର କରଯାଏ । ଯେପରି 'ନ ଥିଲ' 'ନ ଥିବ' ।

'ନାହିଁ' ଓ 'ନୁହେଁ' ନାସ୍ତିବାଚକ କ୍ରିୟାପଦ ଛଡ଼ା ଓଡ଼ଆରେ ଅବ୍ୟୟ 'ନ' ମଧ୍ୟ ନାସ୍ତିବାଚକ ଭବରେ କାର୍ଯ୍ୟ କରେ । ଟିକିଏ ପୂର୍ବରୁ କୁହାଯାଇଛି ଯେ 'ଅଛି' ସହାୟକ କ୍ରିୟାର ଅତୀତ ଓ ଭବିଷ୍ୟତ କାଳରେ ବାକ୍ୟକୁ ନାସ୍ତିବାଚକ କରିବାକୁ ନାସ୍ତି ସୂଚକ ଅବ୍ୟୟ 'ନ' ବ୍ୟବହୃତ ହୁଏ । ଅସମାପିକା କ୍ରିୟାଧାତୁର ବ୍ୟବହାରରେ ନାସ୍ତିସୂଚକ 'ନ'ର ବ୍ୟବହାର ସାମାନ୍ୟ ଅତୀତ ଓ ସାମାନ୍ୟ ଭବିଷ୍ୟତ କାଳ ଏବଂ ଅସମ୍ପନ୍ନ ବର୍ତ୍ତମାନ ଓ ସମ୍ପନ୍ନ ବର୍ତ୍ତମାନ ବ୍ୟତୀତ ଅସମ୍ପନ୍ନ ଅତୀତ ଓ ଭବିଷ୍ୟତ ଏବଂ ସମ୍ପନ୍ନ ଅତୀତ ଓ ଭବିଷ୍ୟତ କାଳରେ ସବୁବେଳେ ମୂଳ ଅସମାପିକା କ୍ରିୟାଧାତୁ ପରେ ଓ ସହାୟକ କ୍ରିୟା ପୂର୍ବରୁ ବ୍ୟବହୃତ ହୁଏ ।

ଉଦାହରଣ (୪) :

୧ । ଚଢ଼େଇଟି ଗୀତ ଗାଉଥିଲା । (ଅସମ୍ପନ୍ନ ଅତୀତ)
ଚଢ଼େଇଟି ଗୀତ ଗାଉ ନ ଥିଲା ।

୨ । କାଲି ବର୍ଷା ହୋଇଥିଲା ।
କାଲି ବର୍ଷା ହୋଇ ନ ଥିଲା । (ସମ୍ପନ୍ନ ଅତୀତ)

୩ । ସେ କାଲି ଦଶଟା ବେଳକୁ ସ୍କୁଲ ଯାଉଥିବ ।
ସେ କାଲି ଦଶଟା ବେଳକୁ ସ୍କୁଲ ଯାଉ ନ ଥିବ ।
(ଅସମ୍ପନ୍ନ ଭବିଷ୍ୟତ)

୪ । ଆଜି ବଜାର ବନ୍ଦ ହୋଇଥିବ ।

ଆଜି ବଜାର ବନ୍ଦ ହୋଇ ନ ଥିବ ।

ସୂତ୍ର ଅସମାପିକା କ୍ରିୟା + ନ + ସହାୟକ କ୍ରିୟା

(ଅତୀତ ବା ଭବିଷ୍ୟତ)

ଯୌଗିକ ଅସମାପିକା କ୍ରିୟା କ୍ଷେତ୍ରରେ ନାସ୍ତିସୂଚକ 'ନ'ର ବ୍ୟବହାର ଯୌଗିକ—ସହାୟକ ଅସମାପିକା କ୍ରିୟାପଦ ପୂର୍ବରୁ ବା ଯୌଗିକ—ଅସମାପିକାର ମୂଳ କ୍ରିୟାଧାତୁ ପରେ ବ୍ୟବହାର ହୁଏ । କିନ୍ତୁ କ୍ରିୟା ଯଦି ଅସମାପିକା ଯୁଗ୍ମ କ୍ରିୟା ଉପପଦ (duplicated imperfect participial) ହୁଏ ତେବେ ନାସ୍ତି ସୂଚକ 'ନ' ଅସମାପିକା ଯୁଗ୍ମ ଉପପଦର ପ୍ରତି ପଦ ପୂର୍ବରୁ ଦୁଇଥର ବ୍ୟବହାର ହୁଏ । (ଉଭୟ ଅସମ୍ପନ୍ନ ଓ ସମ୍ପନ୍ନ ଅସମାପିକା କ୍ରିୟା ଉପପଦ ପ୍ରତି ଏହା ପ୍ରଯୁଜ୍ୟ) ।

ଉଦାହରଣ

ଯୌଗିକ ଅସମାପିକା କ୍ରିୟା—

୧ । ଭାତ ଖାଇ ନ ପାରି ଶୋଇ ପଡ଼ିଲା ।

ଭାତ ନ ଖାଇ ପାରି ଶୋଇ ପଡ଼ିଲା ।

୨ । ସ୍କୁଲ ଯାଉ ନ ଥିବା ବେଳେ ଘରେ ପଢ଼େ ।

ସ୍କୁଲ ନ ଯାଉ ଥିବା ବେଳେ ଘରେ ପଢ଼େ ।

ସୂତ୍ର : ଅସମାପିକା + ନ + ଅସମାପିକା (ସହାୟକ)

ନ + ଅସମାପିକା + ଅସମାପିକା (ସହାୟକ)

ଉଦାହରଣ (୭) : ଅସମାପିକା ଯୁଗ୍ମକ୍ରିୟା ଉପପଦ—

୧ । ସେ ପିଜୁଳି ଖାଇ ଖାଇ ଯାଉଛି । (ଅସମ୍ପନ୍ନ ଯୁଗ୍ମ ଅସମାପିକା)

ସେ ପିଜୁଳି ନଖାଇ ନଖାଇ ଯାଉଛି ।

୨ । ଟ୍ରେନ ଆସୁ ଆସୁ ମୁଁ ଆସିଲି ।

ଟ୍ରେନ ନଆସୁ ନଆସୁ ମୁଁ ଆସିଲି । (ଅସମ୍ପନ୍ନ ଯୁଗ୍ମ-ଅସମାପିକା)

ସୂତ୍ର : ନ + ଅସମାପିକା + ନ + ଅସମାପିକା ।

ସମ୍ଭାବନାକାଳ, ଅନୁଜ୍ଞାର୍ଥକ ଓ ପ୍ରେରଣାର୍ଥକ କ୍ରିୟା ପରେ ମଧ୍ୟ ନାସ୍ତିବାଚକ କ୍ରିୟା 'ନାହିଁ' ଓ ନାସ୍ତିସୂଚକ ଅବ୍ୟୟ 'ନ' ବ୍ୟବହାର ପାଇଁ ପୂର୍ବରୁ ଦର୍ଶାଯାଇଥିବା ନିୟମମାନ ଅନୁସରଣ କରାଯାଏ । ଓଡ଼ିଆ ଭାଷାରେ ଇତିପୂର୍ବକାର୍ଯ୍ୟସମାପ୍ତି ବୁଝାଇବା ପାଇଁ ପୂର୍ଣ୍ଣକ୍ରିୟା 'ଣି' ଏକ ସ୍ୱତନ୍ତ୍ର ବ୍ୟବହାର । ଏହା କେବଳ ଅତୀତ କାର୍ଯ୍ୟସମାପ୍ତି ଓ ଭବିଷ୍ୟତ-କାର୍ଯ୍ୟ-ସମାପ୍ତିକୁ ବୁଝାଏ, ବର୍ତ୍ତମାନର କାର୍ଯ୍ୟକାରୀତାକୁ ବୁଝାଇପାରେ ନାହିଁ । ପୂର୍ଣ୍ଣକ୍ରିୟା 'ଣି'ର ନାସ୍ତିବାଚକ ଅସମ୍ଭବ । କିନ୍ତୁ କଥାବାର୍ତ୍ତାରେ ପୂର୍ଣ୍ଣକ୍ରିୟା 'ଣି' ଅତୀତର-କାର୍ଯ୍ୟ ସମାପ୍ତିକୁ ବୁଝାଉଥିଲେ ଅବ୍ୟୟ 'ନ'ର ସାଧାରଣ ନିୟମକୁ ଅନୁସରଣ କରିବାକୁ ହେବ ।

ଉଦାହରଣ (୮) : (କ) ଅତୀତ-କାର୍ଯ୍ୟ ସମାପ୍ତି—

କ୍ଲାସ ହେଲାଣି ?

ନା, ହୋଇନି ।

ସେ ଷ୍ଟେସନକୁ ଗଲାଣି ?

ନା, ସେ ଷ୍ଟେସନକୁ ଯାଇନି ।

(ଖ) କାଲି ଏତେବେଳକୁ ତମେ ଯିବଣି ।

କାଲି ଏତେବେଳକୁ ତୁମେ ଯାଇ ନଥିବ ।

ତା କାମ ସରିବଣି ।

ତା କାମ ସରି ନଥିବ ।

ସାଧାରଣତଃ କଥାବାର୍ତ୍ତା କରିବା ସମୟରେ ଆମେ 'ହଁ' ବା 'ନା' କହି ସମ୍ମତି ବା ନାସ୍ତିସୂଚକ ଭାବ ପ୍ରକାଶ କରିଥାଉ । 'ହଁ'ର ନାସ୍ତି-ସୂଚକ ହେଉଛି 'ନା' ବା 'ନାଇଁ' । 'ନା' ବା 'ନାଇଁ' 'ନାହିଁ' ନାସ୍ତି-ବାଚକ କ୍ରିୟାପଦର ଅସମ୍ମତିସୂଚକ କଥିତ ରୂପ । କଥା କହିବା ବେଳେ ଆମେ ଅସଂଖ୍ୟ 'ହଁ' ବା 'ନା' କହି ଉତ୍ତର ଦେଉ । କିନ୍ତୁ ଏଇ ଉତ୍ତର ସୂଚକ 'ନା' ବା 'ନାଇଁ' ବ୍ୟବହାର ତିନି ପ୍ରକାରର । ପଚରା ଯାଉଥିବା କୌଣସି ପ୍ରଶ୍ନର ଉତ୍ତର କେବଳ 'ହଁ' ବା 'ନା'ରେ ପ୍ରକାଶ କରାଯାଇ-ପାରେ । ଏଠାରେ 'ନା' ଏକ ନାସ୍ତିବାଚକ ବାକ୍ୟ ଭାବରେ କାର୍ଯ୍ୟ କରେ ।

ଉଦାହରଣ (୯)

ତମେ ଯିବ ?

ନା ।

କିନ୍ତୁ ପଚରଯାଉଥିବା ପ୍ରଶ୍ନର ଉତ୍ତର ସମ୍ପୂର୍ଣ୍ଣ ନାସ୍ତିବାଚକ ହୋଇ-ପାରେ ବା ଆଂଶିକ ଅସ୍ତିବାଚକ ହୋଇପାରେ ।

**ଉଦାହରଣ (୧୦) : (କ) ସମ୍ପୂର୍ଣ୍ଣ ନାସ୍ତିବାଚକ—**

**ସେ କଣ ଭ'ଲ ଲୋକ ?**

**ନା, ସେ ଭଲଲୋକ ନୁହନ୍ତି ।**

**ତୁମେ କ'ଣ ପୁରୀ ଯିବ ?**

**ନା, ମୁଁ ପୁରୀ ଯିବି ନାହିଁ ।**

(ଖ) ଆଂଶିକ ଅସ୍ତିବାଚକ—

ଆପଣ କ'ଣ କଲେଜ ଯାଉଛନ୍ତି ?

ନା, ମୁଁ ବଜାରକୁ ଯାଉଛି ।

ସେମାନେ କଣ ଗ'ପ ଲେଖିବେ ?

ନା, ସେମାନେ କବିତା ଲେଖିବେ ।

କିନ୍ତୁ ଉତ୍ତରମୂଳକ ନାସ୍ତିସୂଚକ 'ନା'ର ବ୍ୟବହାର ଛଡ଼ା ଓଡ଼ିଆରେ 'ନା'ର ଅନ୍ୟ ବ୍ୟବହାରିକ ଅର୍ଥ ରହିଛି । ଯେପରି :

ଉଦାହରଣ (୧୧) :

କ । (୧) ତମେ ଖାଅନା !

(୨) ତମେ ଦେଖନା, ତା'ପରେ ଦେଖାଯିବ ।

ଖ । (୩) ସେ ଆମସାଙ୍ଗରେ ଯିବନା ?

(୪) ତମେ ଆଜି ଏଠି ରହିବନା ?

ଗ । (୫) ତୁ ଯଦି ଖାଇଥାନ୍ତୁ ନା କେମିତି ଲାଗୁଥିଲା ଜାଣିଥାନ୍ତୁ ।

(୬  ସେ ଯଦି ଯାଆନ୍ତା ନା ଭରି ଭଲ ହୁଅନ୍ତା ।

ଘ । (୭) କଟକ ଯିବ ନା ପୁରୀ ଯିବ ?

(୮) ଫୁଲକୋବି ଆଣିବି ନା ବନ୍ଧାକୋବି ?

ଙ । (୯) ସେଇଠୁ କ'ଣ ହେଲା ନା

(୧୦) ତା'ପରେ ସେ କ'ଣ କଲା ନା...

ଚ । (୧୧) ତୁ ସେଠିକି ଯିବୁନାହିଁ ନା, ଦେଖିବା ।

(୧୨) ସେ ଖାଇବ ନାହିଁ ନା, ନିଶ୍ଚୟ ଖାଇବ ।

ଛ । (୧୩) ଆପଣ ଯାହା କୁହନ୍ତୁ ନା କାହିଁକି ଏ କଥା ପୁରା ସତ ।

(୧୪) ସେ ଯାହା କରୁନା କାହିଁକି ପାଠ ଭଲ ପଢ଼େ ।

ଜ । (୧୫) ମୁଁ ଦିନେ ନା ଦିନେ ଏ କାମ କରିବି ।

(୧୬) ମୁଁ ଦିନେ ନା ଦିନେ ତା' ଘରକୁ ଯିବି ।

ଉପରେ ଦିଆ ଯାଇଥିବା ଉଦାହରଣ ଗୁଡ଼କୁ ଲକ୍ଷ୍ୟ କଲେ ଦେଖାଯିବ ଯେ ଉଦାହରଣ ଗୁଡ଼ିକରେ ବ୍ୟବହୃତ ହୋଇଥିବା 'ନା' ର ବିଭିନ୍ନ ବ୍ୟବହାର ନାସ୍ତିବାଚକ ନୁହେଁ । ଉଦାହରଣ 'କ'ରେ 'ନା' କଥାରେ ତୀବ୍ରତା ପ୍ରକାଶ କରିବା ସଙ୍ଗେ ସଙ୍ଗେ ଉଦ୍ଦିଷ୍ଟ ବ୍ୟକ୍ତି ପ୍ରତି ଏକ ଆନ୍ତରିକ ନିର୍ଦ୍ଦେଶ ସୂଚଉଛି । ଉଦାହରଣ 'ଖ'ରେ ଏହା ଅନୁରୋଧ ଓ ପ୍ରଶ୍ନ ସୂଚକ ତୀବ୍ରତା ପ୍ରକାଶ କରୁଛି । କିନ୍ତୁ ଉଦାହରଣ 'ଖ'ରେ ବ୍ୟବହୃତ 'ନା' ସ୍ଥାନରେ ଯଦି 'ନି' ବ୍ୟବହାର କରଯାଏ, ତେବେ ତାହା ନାସ୍ତିବାଚକ ପ୍ରଶ୍ନବାଚକକୁ ବୁଝାଉଥିଲେ ମଧ୍ୟ 'ହଁ' ବା 'ନା' ଉତ୍ତରକୁ ଅପେକ୍ଷା କରେ । ଉଦାହରଣ 'ଗ'ରେ 'ନା' ସର୍ତ୍ତଯୁକ୍ତ ଓ ଅନ୍ୟ ଏକ ପରବର୍ତ୍ତୀ ଅବସ୍ଥାକୁ ବୁଝାଉଛି । ଉଦାହରଣ 'ଘ' ଦୁଇଟି ମଧ୍ୟରୁ ଗୋଟିଏ ବିକଳ୍ପ ଆବଶ୍ୟକତାକୁ ବୁଝାଇ ଦେଉଛି । ଉଦାହରଣ 'ଙ' ଭଷାର ଏକ ବର୍ଣ୍ଣନାତ୍ମକ ଶୈଳୀ । ଉଦାହରଣ 'ଚ' ବକ୍ତାର ପ୍ରତିପକ୍ଷ ପ୍ରତି ଆକ୍ରୋଶ

ବିହୀନ ଏକ ଆନ୍ତରିକ ଆକ୍ଷେପ । 'ଛ' ଓ 'ଢ଼'ର ବ୍ୟବହାରରେ ପାର୍ଥକ୍ୟ ସ୍ପଷ୍ଟ ଏବଂ ଦୁଇଟିଯାକ ଉଦାହରଣ ଏକ ନିଶ୍ଚିତ ମନୋଭାବ ପ୍ରକାଶ କରୁଛନ୍ତି ।

ନାସ୍ତିବାଚକ 'ନା'ର ବ୍ୟବହାର ଓ ବ୍ୟତିକ୍ରମ ଗୁଡ଼କର ସଂସ୍ପର୍ଶରେ ଆମେ ପ୍ରତି ମୁହୂର୍ତ୍ତରେ ଆସୁଥିଲେ ମଧ୍ୟ ଏତେ ପ୍ରକାରର ବିଭିନ୍ନତା ପ୍ରତି କ୍ୱଚିତ ସଚେତନ ହୋଇଥାଉ ।

ସର୍ତ୍ତଯୁକ୍ତ ବାକ୍ୟ ରଚନାରେ ଅସ୍ତିବାଚକ ବାକ୍ୟକୁ ନାସ୍ତିବାଚକ କରିବାକୁ ବା ନାସ୍ତିବାଚକ ବାକ୍ୟ ରଚନା କରିବାକୁ ଅବ୍ୟୟ 'ନ' ବ୍ୟବହାର ହୁଏ । ଏପରି ବାକ୍ୟରେ ସର୍ତ୍ତଯୁକ୍ତ ଅସମାପିକା ଅତୀତ କାଳରେ ଥିବା କ୍ରିୟାର ପୂର୍ବରୁ 'ନ' ବ୍ୟବହାର କରିବାକୁ ପଡ଼େ । ସର୍ତ୍ତଯୁକ୍ତ ବାକ୍ୟକୁ ଓଡ଼ିଆରେ 'ପ୍ରତିବନ୍ଧୀ ବାକ୍ୟ' ବୋଲି ମଧ୍ୟ କୁହାଯାଇପାରେ । ସର୍ତ୍ତଯୁକ୍ତ ନାସ୍ତିବାଚକ ବାକ୍ୟ ଦୁଇ ପ୍ରକାର । ଏହା ଆଂଶିକ ଅସ୍ତିବାଚକ ବା ସଂପୂର୍ଣ୍ଣ ନାସ୍ତିବାଚକ ହୋଇପାରେ । ସଂପୂର୍ଣ୍ଣ ନାସ୍ତିବାଚକ ବାକ୍ୟରେ ନାସ୍ତିସୂଚକ 'ନ' ସହିତ ନାସ୍ତିବାଚକ କ୍ରିୟା 'ନାହିଁ' ବା 'ନୁହେଁ' ବ୍ୟବହାର କରିବାକୁ ପଡ଼େ ।

ଉଦାହରଣ (୧୨) : (କ) ଆଂଶିକ ଅସ୍ତିବାଚକ—

ସେ ନ ଗଲେ ମୁଁ ଯିବି ।

ଆପଣ ନ ରହିଲେ ସେ ରହନ୍ତା ।

(ଖ) ସଂପୂର୍ଣ୍ଣ ନାସ୍ତିବାଚକ –

ମୁଁ ନ ହସିଲେ ସେ ହସିବନି ।

ତୁ ନ ରହିଲେ ସେ ରହିବନି ।

ସେମାନେ ନ ରହିଲେ ଆମେ ଯାଉନୁ ।

ତୁମେ ନ ଆସିଲେ ଆମେ ଆସୁନୁ ।

ଏହି ସର୍ତ୍ତଯୁକ୍ତ ନାସ୍ତିବାଚକ ବାକ୍ୟରେ କାର୍ଯ୍ୟକାଳ ସବୁବେଳେ ଭବିଷ୍ୟତକୁ ନିର୍ଦ୍ଦେଶ କରିଥାଏ । କିନ୍ତୁ ଅତୀତକୁ ଓ କିଛି ପରିମାଣରେ ବର୍ତ୍ତମାନକୁ ସୂଚନା ଦେବା ପାଇଁ ବାକ୍ୟ ମଝିରେ 'ବୋଲି' ବ୍ୟବହାର

କରି ବୋଲି ପୂର୍ବରୁ ସର୍ତ୍ତଯୁକ୍ତ ଅତୀତକାଳରେ 'ନି' ବା 'ନାହିଁ' ଯୋଗହୁଏ । ଏହା ମଧ୍ୟ ଆଂଶିକ ଓ ସଂପୂର୍ଣ୍ଣ ନାସ୍ତିବାଚକ ହୋଇପାରେ । ଏ ବାକ୍ୟ ଗୁଡ଼କରେ କିନ୍ତୁ କାର୍ଯ୍ୟ କାରଣଗତ ଅର୍ଥ ପ୍ରକାଶପାଏ ।

ଉଦାହରଣ (୧୩) : (କ) ଆଂଶିକ ଅସ୍ତିବାଚକ —

ତୁମେ ଗଲନି / ନାହିଁ ବୋଲି ସେ ଗଲା ।

ସେ ଖାଇଲନି ବୋଲି ମୁଁ ଆସିଲି ।

(ଖ) ସଂପୂର୍ଣ୍ଣ ନାସ୍ତିବାଚକ

ତୁ ରହିଲୁନି ବୋଲି ସେ ରହିଲନି ।

ସେ ବସିଲନି ବୋଲି ମୁଁ ବସିଲିନି ।

ତୁମେ ଆସିଲନି ବୋଲି ମୁଁ ଗଲିନି ।

ଉପରୋକ୍ତ ଉଦାହରଣରେ ଲକ୍ଷ୍ୟ କରଯାଇ ପାରେ ଯେ 'ବୋଲି' ଲଗାଇ ବାକ୍ୟ ଗଢ଼ାଗଲେ ସେଥିରେ ଅବ୍ୟୟ 'ନ' ବ୍ୟବହୃତ ନ ହୋଇ 'ନି' ବା 'ନାହିଁ'ର ବ୍ୟବହାର ଦୁଇଥର ହେଉଛି ।

'ଯଦିଓ' 'ତେବେ' ବ୍ୟବହାର ହୋଇ ସର୍ତ୍ତଯୁକ୍ତ ନାସ୍ତିବାଚକ ରଚନା କରଗଲେ ସେ ବାକ୍ୟରେ ଅବ୍ୟୟ 'ନ' ଓ ନାସ୍ତିବାଚକ 'ନାହିଁ' ବ୍ୟବହାର ହୋଇ ଏହା ପୂର୍ବପରି ଆଂଶିକ ବା ସଂପୂର୍ଣ୍ଣ ନାସ୍ତିବାଚକ ହୁଏ ଏବଂ ସବୁବେଳେ ଏପରି ବାକ୍ୟର କାର୍ଯ୍ୟକାଳ ଭବିଷ୍ୟତକୁ ନିର୍ଦ୍ଦେଶ କରେ ।

ଉଦାହରଣ (୧୪) : (କ) ଆଂଶିକ ଅସ୍ତିବାଚକ—

ସେ ଯଦି ନ ଯିବ ତେବେ ମୁଁ ଯିବି ।

ତୁ ଯଦି ନ ଖାଇବୁ ତେବେ ସେ ଚାଲିଯିବ ।

(ଖ) ସଂପୂର୍ଣ୍ଣ ନାସ୍ତି ବାଚକ—

ସେମାନେ ଯଦି ନ ଯିବେ ତେବେ ଆମେ ଯିବୁ ନାହିଁ ।

ତୁମେ ଯଦି ନ ଆସିବ ତେବେ ସେମାନେ
ଖାଇବେ ନାହିଁ ।

(ଉପରୋକ୍ତ ଉଦାହରଣ (କ ଓ ଖ) ଦୁଇଟିରେ 'ତେବେ'ର ବ୍ୟବ-ହାର ନ କଲେ ମଧ୍ୟ ଅର୍ଥ ଠିକ୍ ଭବରେ ପ୍ରକାଶ ପାଇବ ।)

'ଯେପରି' ଓ 'ଯେ' ଲଗାଇ ସଂଯୁକ୍ତ ବାକ୍ୟ ରଚନା କରଗଲେ ଅବ୍ୟୟ 'ନ' ବ୍ୟବହାର କରଯାଏ ଓ ଏଇ ନାସ୍ତିବାଚକ ବାକ୍ୟ ସାଧା-ରଣତଃ ଅନୁଜ୍ଞା ସୂଚକ ଅର୍ଥ ପ୍ରକାଶ କରେ । ଏପରି ବାକ୍ୟ ଉଭୟ ଏକ ବଚନ ଓ ବହୁ ବଚନରେ ଆଂଶିକ ବା ସଂପୂର୍ଣ୍ଣ ନାସ୍ତି ବାଚକ ହୋଇ ପାରେ । କିନ୍ତୁ ସଂପୂର୍ଣ୍ଣ ନାସ୍ତିବାଚକ କରିବାକୁ 'ନାହିଁ' ବା 'ନୁହେଁ' କ୍ରିୟା ଆବଶ୍ୟକ ଅନୁସାରେ ଲଗାଯାଏ ।

ଉଦାହରଣ (୧୫) (କ) : ଆଂଶିକ ନାସ୍ତିବାଚକ —

ଏଥିରୁ ଯେପରି କେହି ମନେ ନ କରନ୍ତି ଯେ ସେଠାରେ
ମେଳା ହେଉଛି ।

ତୁମେ ଯେପରି ନ ଭବ ଯେ ସେ ଜଣେ ଭଲ ଲୋକ ।

(ଖ) ସଂପୂର୍ଣ୍ଣ ନାସ୍ତିବାଚକ—

ଏଥିରୁ ଯେପରି ସେମାନେ ନ ବୁଝନ୍ତି ଯେ ସେ
ଜାଗାରେ ସ୍କୁଲ ନାହିଁ ।

ସେ ଯେପରି ନ ଜାଣେ ଯେ ତୁମେ ଜଣେ ଶିକ୍ଷକ ନୁହଁ ।

(ବି:ଦ୍ର—ତୁ, ତୁମେ ଓ ଆମେ ବ୍ୟବହାର ହେଲେ ବାକ୍ୟରେ 'ନୁହେଁ' ସ୍ଥାନରେ ସବୁବେଳେ 'ନୁହଁ' ବ୍ୟବହାର ହୁଏ । ଏହାକୁ 'ନୁହଁ' କ୍ରିୟାର ବ୍ୟତିକ୍ରମ ବ୍ୟବହାର କୁହାଯାଇ ପାରେ । ଏହା ବ୍ୟତୀତ ଅନ୍ୟ ସବୁ କ୍ଷେତ୍ରରେ ଉଭୟ 'ନୁହଁ' ଓ 'ନୁହେଁ' ପ୍ରତିସ୍ଥାପନ (Substitution କରଯାଇ ପାରେ ।)

ଉପରେ ଉଦାହରଣ (୧୫) ଖ,ରେ ଦିଆଯାଇଥିବା ସଂପୂର୍ଣ୍ଣ ନାସ୍ତି-

ବାଚକ ବାକ୍ୟଗୁଡ଼କ କିନ୍ତୁ ଅନ୍ୟ ଏକ ନାସ୍ତିବାଚକ ନିୟମର ଅନ୍ତର୍ଭୁକ୍ତ । ଏ ବାକ୍ୟଗୁଡ଼କରେ ନାସ୍ତିସୂଚକ ଚିହ୍ନ ଓ କ୍ରିୟା ବ୍ୟବହୃତ ହେଲେ ମଧ୍ୟ ଏଗୁଡ଼କ ପରୋକ୍ଷରେ ଅସ୍ତିସୂଚକ ଅର୍ଥ ପ୍ରକାଶ କରନ୍ତି । ଏଦ୍ୱାର 'ଯୁଗ୍ମ ନାସ୍ତିସୂଚକ 'ନ' ବ୍ୟବହାରରେ, ଅସ୍ତିସୂଚକ ଅର୍ଥ ପ୍ରକାଶ' ନାମକରଣ କରିହେବ । ଆଉ କେତେଗୁଡ଼ିଏ ଉଦାହରଣ ନିମ୍ନରେ ଦିଆଗଲା ।

ଉଦାହରଣ (୧୬) :

(କ) ସେ ନ ଗଲେ ନ ହୁଏ ।
ସେ କଥା ନ କହିଲେ ନ ହେବ ।
ତୁମେ ନ ରହିଲେ ନ ଚଳେ ।
ମୁଁ ଚାକିରୀ ନ କଲେ ନ ଚଳେ ।

(ଖ) ତୁ ନ ଗଲେ ନ ଯା ।
ସେ ନ ଖାଇଲେ ନ ଖାଉ ।
ଆପଣ ନ ରହିଲେ ନ ରହନ୍ତୁ ।
ସେମାନେ ନ କହିଲେ ନ କହନ୍ତୁ ।

(ଗ) ସେମାନେ ନ ଦେଖିଲେ ନାହିଁ ।
ତୁମେ ନ ଖାଇଲେ ନାହିଁ ।
ସେ ନ ପଢ଼ିଲେ ନାହିଁ ।
କଥା ନ କହିଲେ ନାହିଁ ।

ଉପରେ ଦିଆ ଯାଇଥିବା ଉଦାହରଣ (୧୬)ର କ, ଖ, ଗ କୁ ଲକ୍ଷ୍ୟ କଲେ ଦେଖାଯିବ ଯେ (କ)ରେ ନାସ୍ତିବାଚକ ବାକ୍ୟଗୁଡ଼କରେ ପ୍ରକୃତରେ ଅର୍ଥଗତ ଅସ୍ତିବାଚକ । କିନ୍ତୁ (ଖ) ଓ (ଗ) ମଧ୍ୟରେ କିଛି ପରିମାଣରେ ସାଦୃଶ୍ୟ ରହିଛି । (ଖ)ରେ ନାସ୍ତିବାଚକ ବାକ୍ୟର ଅର୍ଥ ସାମାନ୍ୟ ଅବଜ୍ଞା ଭାବ ପ୍ରକାଶ କରୁଥିବାବେଳେ (ଗ)ରେ ତାହା ଆନ୍ତରିକ ଅଭିମାନ ବା ଅଭିଯୋଗ ଭାବରେ ପ୍ରକାଶିତ । ଉପରୋକ୍ତ (ଖ) ଉଦାହରଣରେ ଥିବା ବାକ୍ୟଗୁଡ଼କରେ 'ଯଦି' ବ୍ୟବହାର କରି ସର୍ତ୍ତଯୁକ୍ତ ନାସ୍ତିବାଚକ ବାକ୍ୟ ରଚନା କରଯାଇ ପାରିବ । 'ନ' ପରେ ବ୍ୟବହାର ହେଉଥିବା ଅସମାପିକା କ୍ରିୟାର କାଳ ପରିବର୍ତ୍ତନକୁ ଲକ୍ଷ୍ୟ କରଯାଇ ପାରେ ।

ଉଦାହରଣ (୧୬)

ତୁ ଯଦି ଏଠି କାମ ନ କରୁ ନ କର ।

ସେ ଯଦି କଥା ନ କହୁଛି ନ କହୁ ।

ତୁମେ ଯଦି ପାଠ ନ ପଢ଼ିବ ନ ପଢ଼ ।

ସେମାନେ ଯଦି ଏଠାକୁ ନ ଆସିବେ ନ ଆସନ୍ତୁ ।

ତୁ ଯଦି କାମ ନ କଲୁ ନ କର ।

ଆପଣ ଯଦି ଏଠିକି ନ ଆସିଲେ ନ ଆସନ୍ତୁ

'ଯେ ହେତୁ' ଓ 'ସେହେତୁ' ପ୍ରୟୋଗରେ ସର୍ତ୍ତଯୁକ୍ତ ନାସ୍ତିବାଚକ ବାକ୍ୟରେ ଆଂଶିକ ଓ ସଂପୂର୍ଣ୍ଣ ନାସ୍ତିବାଚକ କରିବାକୁ ଯଥାକ୍ରମେ 'ନ' ଓ 'ନି' ବା 'ନାଇଁ' ଏବଂ 'ନାହିଁ' ବ୍ୟବହାର ହୁଏ । ଏପରି ବାକ୍ୟରେ ମଧ୍ୟ ସର୍ତ୍ତଯୁକ୍ତ କ୍ରିୟାରେ କାଳର ପରିବର୍ତ୍ତନ ହୁଏ ।

ଉଦାହରଣ (୧୮) : (କ) ଆଂଶିକ ଅସ୍ତିବାଚକ—

ଯେହେତୁ ସେ ଏ କାମ ନ କଲେ ସେ ହେତୁ ମୁଁ କଲି ।

ଯେହେତୁ ତୁମେ ପୁରୀ ନ ଯାଉଛ ସେ ହେତୁ ମୁଁ ଯାଉଛି ।

(ଖ) ସଂପୂର୍ଣ୍ଣ ନାସ୍ତିବାଚକ .

ଯେହେତୁ ତୁମେ ସେଠାକୁ ଗଲନି ସେହେତୁ ମୁଁ ଗଲି ନାହିଁ ।

ଯେହେତୁ ସେ ମନଦେଇ ପଢୁନି ସେହେତୁ ତା'ର ମନେ ରହୁ ନାହିଁ ।

ଯେହେତୁ ସେମାନେ ଯାଉନାହାନ୍ତି ସେହେତୁ ଆମେ ଯାଉନୁ ।

ଯେହେତୁ ଆପଣ ଖାଉନାହାନ୍ତି ସେହେତୁ ସେମାନେ ଖାଉ-ନାହାନ୍ତି ।

ଉପରୋକ୍ତ 'ଯେହେତୁ, ସେହେତୁ' ବ୍ୟବହାରରେ ସଂପୂର୍ଣ୍ଣ ନାସ୍ତି-ବାଚକରେ କ୍ରିୟାପଦର କାଳର ପରିବର୍ତ୍ତନ ସହିତ ପୁରୁଷ ବଚନ ଯୋଗରେ 'ନାହିଁ' କ୍ରିୟା ପଦରେ ମଧ୍ୟ ପରିବର୍ତ୍ତନ ହେଉଛି ।

'କେବଳ' ଏବଂ 'କେବଳ ଓ ଯେ' ପ୍ରୟୋଗରେ ସର୍ତ୍ତଯୁକ୍ତ ନାସ୍ତିବାଚକ ବାକ୍ୟରେ 'ନ' ବ୍ୟବହାର ନ ହୋଇ 'ନୁହଁ' ଓ 'ନୁହେଁ' ବ୍ୟବହାର ହୁଏ । କିନ୍ତୁ ଏହାର ସଂପୂର୍ଣ୍ଣ ନାସ୍ତିବାଚକରେ ଏକାଧିକ ଥର ନାସ୍ତିବାଚକ କ୍ରିୟାପଦ ମଧ୍ୟ ରହିପାରେ ।

ଉଦାହରଣ (୧୯) : (କ) ଆଂଶିକ ଅସ୍ତିବାଚକ—

କେବଳ ସେତିକି ନୁହେଁ ସେଥିରେ ଆହୁରି ଅନେକ କଥା ଅଛି ।

କେବଳ ତା ନୁହେଁ ସେମିତି କେତେ ପ୍ରକାର ।

କେବଳ କଥାରେ ନୁହଁ କାମରେ ମଧ୍ୟ ସେ ସେମିତି ।

(ଖ) କେବଳ ଯେ ଏ କଥା ସତ ତା ନୁହେଁ ଆହୁରି ବହୁତ ସତ କଥା ଅଛି ।

କେବଳ ଯେ ତୁମ କଥା ମିଛ ନୁହଁ ସେ କଥା ସମସ୍ତେ ଜାଣନ୍ତି ।

(ଗ) କେବଳ ଯେ ତା କଥା ଭୁଲ ନୁହଁ, ଏ କଥା ସମସ୍ତେ ଜାଣନ୍ତି ନାହିଁ ।

କେବଳ ଯେ ସେଠାରେ ଲୋକ ନାହାନ୍ତି ତା ନୁହଁ, ସେଠାରେ ଆଉ କେହି ବି ନାହାନ୍ତି ।

କେତେକ ବିକଳ୍ପ ଅବସ୍ଥା ବା ଦୁଇଟି ମଧ୍ୟରୁ ଗୋଟିଏ ବୁଝାଇବା ପାଇଁ 'ନୁହଁ' ବା 'ନୁହେଁ' କ୍ରିୟାପଦ ପ୍ରୟୋଗ କରଯାଏ ।

ଉଦାହରଣ (୨୦) :

ସେ ନୁହଁ ତୁମେ ।
ସେ କଥା ନୁହଁ ଅନ୍ୟ କଥା ।
ସେ ବିଷୟ ନୁହଁ ଅନ୍ୟ ବିଷୟ ।

ଉପରୋକ୍ତ ଉଦାହରଣମାନ ଲକ୍ଷ୍ୟ କଲେ ଦେଖାଯିବ ଯେ ସଂପୂର୍ଣ୍ଣ ନାସ୍ତିବାଚକ ବାକ୍ୟରେ ଦୁଇ ବା ତତୋଧିକ ନାସ୍ତିବାଚକ ପଦ ମଧ୍ୟରୁ ପ୍ରଥମଟି ହୁଏତ ନାସ୍ତିସୂଚକ ଚିହ୍ନ ବା ନାସ୍ତିସୂଚକ କ୍ରିୟା ଏବଂ ଶେଷଟି ସବୁବେଳେ ନାସ୍ତିସୂଚକ କ୍ରିୟାପଦ ।

ଅନିରୂପିତ-କ୍ରିୟାପଦ ପୂର୍ବରୁ ନାସ୍ତିସୂଚକ ଅବ୍ୟୟ 'ନ' ବ୍ୟବହାର ହୋଇ ନିଷେଧାର୍ଥକ କ୍ରିୟାଜ ବିଶେଷ୍ୟପଦ ଓ ନିଷେଧାର୍ଥକ କ୍ରିୟାଜ ବିଶେଷଣ ପଦ ତିଆରି କରଯାଏ ।

ଉଦାହରଣ (୨୧) : (କ) ନିଷେଧାର୍ଥକ କ୍ରିୟାଜ ବିଶେଷ୍ୟ ପଦ

ନ କୁହା କଥା
ନ ଦେଖା ଜିନିଷ
ନ ଶୁଣା କଥା

(ଖ) ନିଷେଧାର୍ଥକ କ୍ରିୟାଜ ବିଶେଷଣ ପଦ –

ନ କହିବା କଥା / ନ କହିଲ କଥା
ନ ଖାଇବା ଭତ / ନ ଖାଇଲ ଭତ
ନ ଯିବା ଜାଗା / ନ ଗଲ ଜାଗା

ଉପରୋକ୍ତ କ୍ରିୟାଜ ବିଶେଷଣ ପଦରେ ବ୍ୟବହୃତ 'ଇବା' ଓ 'ଇଲ' ପ୍ରତ୍ୟୟ କ୍ରିୟାପଦର ଡାହାଣ ପାଖରେ କରଯାଇ କ୍ରିୟାଜ ବିଶେଷ୍ୟ ପଦ ମଧ୍ୟ ହୋଇପାରେ ।

ଅନିରୂପିତ କ୍ରିୟା ପଦର ଡାହାଣ ପାଖରେ 'ରୁ' ଯୋଗକରି ସର୍ତ୍ତଯୁକ୍ତ ବାକ୍ୟ ରଚନା କରଗଲେ ଏହାକୁ ନାସ୍ତିବାଚକ କରିବାକୁ

ଅବ୍ୟୟ 'ନ' କୁ ସଂଯୁକ୍ତ କ୍ରିୟାର ପୂର୍ବରୁ ବ୍ୟବହାର କରିବାକୁ ପଡ଼ବ । ଏହି ନାସ୍ତିବାଚକ ବାକ୍ୟ ମଧ୍ୟ ଆଂଶିକ ବା ସଂପୂର୍ଣ୍ଣ ନାସ୍ତିବାଚକ ହୋଇପାରେ ।

ଉଦାହରଣ (୨୨) : (କ) ଆଂଶିକ ଅସ୍ତିବାଚକ—

ମୁଁ ନ ଖାଇବାରୁ ସେ ଖାଇଲେ ।

ମୁଁ ନ ପଢ଼ିବାରୁ ଫେଲ୍ ହେଲି ।

ମୁଁ ନ ଯିବାରୁ ବସ୍ ଫେଲ ହେଲି ।

(ଖ) ସଂପୂର୍ଣ୍ଣ ନାସ୍ତିବାଚକ —

ମୁଁ ନ ବସିବାରୁ ସେ ବସିଲେ ନାହିଁ ।

ମୁଁ ନ ଯିବାରୁ ସେ ରହିଲେ ନାହିଁ

କାମ ନ କରିବାରୁ ତାକୁ ଆମେ ରଖିଲୁନି ।

ବର୍ଷା ନ ହେବାରୁ ମୁଁ ଛତା ଆଣିଲିନି ।

ଲକ୍ଷ୍ୟ କରାଯାଇପାରେ ଯେ ଉପରୋକ୍ତ ଉଦାହରଣ ଗୁଡ଼ିକରେ କାର୍ଯ୍ୟକାଳ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ସବୁ ସମୟକୁ ବିଭିନ୍ନ ପରି-ସ୍ଥିତିରେ ବୁଝାଉଛି ।

ଏପର୍ଯ୍ୟନ୍ତ ନାସ୍ତିବାଚକ କ୍ରିୟା ଓ ନାସ୍ତିସୂଚକ ଚିହ୍ନର ନିଷେଧାର୍ଥକ ବ୍ୟବହାର ଉପରେ ଦିଆଗଲା । ପୂର୍ବରୁ ନାସ୍ତିସୂଚକ 'ନା' ପଦର କେତେକ ବ୍ୟତିକ୍ରମ-ବ୍ୟବହାର ଦର୍ଶାଇ ଦିଆଯାଇଛି । ତଳେ ଆଉ କେତୋଟି ବ୍ୟତିକ୍ରମ-ବ୍ୟବହାରର ଉଦାହରଣକୁ ଲକ୍ଷ୍ୟ କରାଯାଇ ପାରେ ।

ଉଦାହରଣ (୨୩) :

୧ । ସତେ ନା !

୨ । ନୁହେଁ ?

୩ । କହୁନ ?

୪ । ନଚେତ୍

୫ । ନତୁବା

୬ । ନ ହେଲେ / ନୋହିଲେ

ଉପରୋକ୍ତ ଉଦାହରଣରେ ପ୍ରଥମ ତିନୋଟି ଶବ୍ଦରେ ବ୍ୟବହାରଗତ ଅର୍ଥ ପାର୍ଥକ୍ୟ ରହିଛି । 'ସତେନା' ଶବ୍ଦ ନିଷେଧାର୍ଥକ ନ ହୋଇ ଆଶ୍ଚର୍ଯ୍ୟ-ବୋଧକ ଅର୍ଥ ପ୍ରକାଶ କରୁଛି । ସେହିପରି 'ନୁହେଁ' ପଦର ଯାଉଥିବା କୌଣସି ପ୍ରଶ୍ନର ଉତ୍ତର ଆଶାକରେ । କହୁନ' ମଧ୍ୟ କୌଣସି କଥା କହିବା ପରେ ତା'ର ସମ୍ମତିସୂଚକ ଉତ୍ତର ଆଶା କରିଥାଏ । ଉଦାହରଣ (୩), (୪) ଓ (୬)ର ବ୍ୟବହାରିକ ଅର୍ଥ ବର୍ଜନାର୍ଥକ ବା ବିକଳ୍ପାର୍ଥକ ।

ନିମ୍ନଲିଖିତ ବାକ୍ୟଗୁଡ଼କ ଦ୍ରଷ୍ଟବ୍ୟ :

ତୁମେ ମନଦେଇ ପାଠ ପଢ଼ ନଚେତ୍ ଭଲ ଫଳ ହେବନି ।

ସେ ଯାଉ ନଚେତ୍ ତୁମେ ଯାଅ ।

ରମ ପାଠ ପଢ଼ୁ ନତୁବା ବ୍ୟବସାୟ କରୁ ।

ରମେଶ ଠିକ୍ ସମୟରେ ସ୍କୁଲ ଗଲା, ନ ହେଲେ ତା'ର ଡେରି ହୋଇଥାନ୍ତା ।

କେତେକ ଶବ୍ଦର ପୂର୍ବରୁ 'ଅ' ପୂର୍ବ-ପ୍ରତ୍ୟୟ କରଯାଇ ନିଷେଧା-ର୍ଥକ ଅର୍ଥ ପ୍ରକାଶ ପାଏ । ଯେପରି,

ଉଦାହରଣ (୨୪) :

ଅଜଣା ଲୋକ

ଅକୁହା ଭବ

ଅଶୁଣା କଥା

ଅଚିହ୍ନା ଦେଶ

କେତେକ ସ୍ଥଳରେ ନାସ୍ତିବାଚକର ବ୍ୟବହାର ପ୍ରଶ୍ନବାଚକ ପରି ମନେହୁଏ । ଏହାକୁ 'ନାସ୍ତିବାଚକ ପ୍ରଶ୍ନ କରଣ' ନାମକରଣ କରଯାଇ-

ପାରେ । ଏ ପ୍ରକାର ପ୍ରଶ୍ନର ଉତ୍ତର 'ହଁ' ବା 'ନା' ବା ବକ୍ତବ୍ୟମୂଳକ ହୋଇପାରେ ।

ଉଦାହରଣ (୨୪) :

୧ । ତମେ କ'ଣ ପୁରୀ ଯିବ ନାହିଁ ?

୨ । ଇନ୍ଦିରାଗାନ୍ଧୀ କ'ଣ ଭାରତର ପ୍ରଧାନମନ୍ତ୍ରୀ ନୁହନ୍ତି ?

୩ । ତୁ ଭାତ ଖାଇବୁ ନାହିଁ ?

୪ । ସେ କ'ଣ ନ ଖାଇବ ?

୫ । ମୁନା କ'ଣ ନ ଖାଇ ରହିବ ?

ଓଡ଼ିଆରେ ଆହୁରି କେତେକ ନାସ୍ତିଅର୍ଥକ ଶବ୍ଦ ରହିଛି । କିନ୍ତୁ ସେଗୁଡ଼ିକ ନାସ୍ତିବାଚକ ଚିହ୍ନ ବା ନାସ୍ତିବାଚକ କ୍ରିୟାପଦ ସହିତ ବ୍ୟବହାର ହୁଅନ୍ତି । ଏପରି କେତେଗୁଡ଼ିଏ ଶବ୍ଦ ହେଲା—ମୋଟେ, ଜମା, ଆଦୌ, କଦାପି, କେବେ, କିଛି, କ୍ୱଚିତ୍ ।

ଉଦାହରଣ (୨୬) :

୧ । ଜୁନି ମୋଟେ ଭାତ ଖାଇଲା ନାହିଁ ।

୨ । ବାବାଜୀର ଜମା ଟଙ୍କା ନାହିଁ ।

୩ । ସେ ଆଦୌ ଏ କାମ କରିନାହିଁ ।

୪ । ତୁମେ କଦାପି ମିଛ କହିବ ନାହିଁ ।

୫ । ସେ କେବେ (ହେଲେ) ଏ କଥା କହି ନ ଥିବ ।

୬ । ସେ କିଛି ନୁହେଁ ।

୭। ମୁଁ ସେଠାକୁ କ୍ୱଚିତ୍ ଯାଏ ।

ଉପରୋକ୍ତ ଉଦାହରଣଗୁଡ଼ିକରେ 'କ୍ୱଚିତ'ର ବ୍ୟବହାର କେବଳ ବ୍ୟତିକ୍ରମ । ଏଠାରେ ଅତ୍ୟଳ୍ପ ଅର୍ଥ ପ୍ରକାଶ ପାଉଥିବାରୁ ଅନ୍ୟ

ନିଷେଧାର୍ଥକ ଭେଦର ବ୍ୟବହାର ହୋଇନାହିଁ ।

ବର୍ତ୍ତମାନ ଓଡ଼ିଆ ନାସ୍ତିବାଚକ ଆଲୋଚନାର ଶେଷରେ ନାହିଁ କ୍ରିୟା ପଦ ବିଷୟରେ ଗୋଟିଏ ଦୁଇଟି କଥା କହି ଆଲୋଚନାଟି ଶେଷ କରିବି ।

ନାସ୍ତିବାଚକ କ୍ରିୟା 'ନାହିଁ' 'ଅଛି' ସହାୟକ କ୍ରିୟାର ନାସ୍ତି-ବାଚକ । ଯେଉଁ ବାକ୍ୟରେ 'ଅଛି' କ୍ରିୟା ଅନ୍ୟ ମୂଳ କ୍ରିୟା ଧାତୁ ସହିତ ଯୁକ୍ତହୁଏ ସେଠାରେ 'ଅଛି' ନାସ୍ତିବାଚକ 'ନାହିଁ' ଓ 'ନି' ଉଭୟ ବ୍ୟବହାର ହୋଇପାରେ । କିନ୍ତୁ ଯେଉଁଠି କେବଳ 'ଅଛି' ସହାୟକ କ୍ରିୟା ଦ୍ୱାରା ବାକ୍ୟ ଶେଷ ହୁଏ, ସେଠାରେ କେବଳ 'ନାହିଁ' ହୁଏ, 'ନି' ହୋଇପାରେ ନାହିଁ । 'ନାହିଁ'କୁ କ୍ରିୟାପଦ ଭାବରେ ଗ୍ରହଣ କରାଯାଉଥିବା ବେଳେ 'ନି' ଏକ ଅବ୍ୟୟ ପଦ ଭାବରେ ଗୃହୀତ ।

ନାସ୍ତିବାଚକ ବାକ୍ୟରେ ବାକ୍ୟର କର୍ତ୍ତା ଓ କ୍ରିୟା ସହିତ ନାସ୍ତି-ବାଚକ ପଦର ସମ୍ପର୍କ ଅବିଚ୍ଛିନ୍ନ । ଲକ୍ଷ୍ୟ କରାଯାଇପାରେ ଯେ ଓଡ଼ିଆରେ ନାସ୍ତିବାଚକ ବାକ୍ୟରେ ସମ୍ପୂର୍ଣ୍ଣ ନାସ୍ତିବାଚକ କରିବାକୁ ନାସ୍ତିବାଚକ କ୍ରିୟା ପଦଗୁଡ଼ିକ ସର୍ବଦା ବାକ୍ୟ ଶେଷରେ ରହେ ।

ଇଂରାଜୀରେ ନାସ୍ତିବାଚକ କ୍ରିୟା ପଦ ବାକ୍ୟ ମଝିରେ ବସେ । ଆଉ କେତେକ ଭାଷା, ଯେପରି ଓଡ଼ିଆର ସମ୍ବଲପୁରୀ ଉପଭାଷା, ଓଡ଼ିଆର ସମଗୋତ୍ରୀ ଅହମୀୟା ଭାଷା, ହିନ୍ଦୀ ଭାଷା ପ୍ରଭୃତିରେ କେତେକ ବ୍ୟବହାରରେ ନାସ୍ତିବାଚକ ପଦ ବାକ୍ୟ ଶେଷରେ ବ୍ୟବହୃତ କ୍ରିୟାଧାତୁର ପୂର୍ବରୁ ରହିଥାଏ । କିନ୍ତୁ ଓଡ଼ିଆର ସମଗୋତ୍ରୀ ବଙ୍ଗଳା ଭାଷାରେ ଠିକ୍ ଓଡ଼ିଆ ପରି ସାଧାରଣତଃ ନାସ୍ତିବାଚକ ପଦ ବ୍ୟବହାର କରି ନାସ୍ତି-ବାଚକ ବାକ୍ୟ ଶେଷ ହୁଏ । ବର୍ତ୍ତମାନ ସଂକ୍ଷିପ୍ତ ଭାବରେ କହିବାକୁ ଗଲେ 'ନ', 'ନା', 'ନି', 'ନାହିଁ' ଓ 'ନୁହେଁ' ଏଇ ପାଞ୍ଚଟିକୁ ନାସ୍ତିବାଚକ ଚିହ୍ନଭାବରେ ଗ୍ରହଣ କରାଯାଇପାରେ ।

ପ୍ରତ୍ୟେକ ଭାଷାର ବ୍ୟାକରଣ ଅଛି । ବ୍ୟାକରଣ ଭାଷାର ସୂତ୍ର, କିନ୍ତୁ କେବଳ ସୂତ୍ର ଶିକ୍ଷା କଲେ ଭାଷା ଶିକ୍ଷା ହୁଏ ନାହିଁ । ବ୍ୟାକରଣ ସୂତ୍ର

ବା ନିୟମକୁ ଅତିକ୍ରମ କରି ଭଷାର ବ୍ୟବହାର ଶିଖିବାକୁ ହୁଏ । ଭଷାର ବ୍ୟବହାରରେ ଯେତେ କଥା ଥାଏ ତାକୁ ବ୍ୟବହାରାତ୍ମକ ବା ବର୍ଣ୍ଣନାତ୍ମକ ବ୍ୟାକରଣ ମାଧ୍ୟମରେ ଜାଣିବାକୁ ପଡେ । ଜଣେ ସ୍ୱଭଷୀକୁ (native speaker) କୌଣସି ବାକ୍ୟର ବ୍ୟବହାର 'ଏପରି କାହିଁକି ହୋଇଛି' ବୋଲି ପଚାରିଲେ ହୁଏତ ସେ ଆଦୌ ତାହାର ଉତ୍ତର ଦେଇ ପାରିବ ନାହିଁ, କିନ୍ତୁ 'କିପରି ଏପରି ହୋଇଛି' ପଚାରିଲେ ସେ ବ୍ୟବହାର ଅନୁସାରେ ହୁଏତ କହିବ ଯେ ଆମେ ଏପରି ବ୍ୟବହାର କରୁ । ତେଣୁ ବ୍ୟବହାରାତ୍ମକ ବ୍ୟାକରଣ ଭଷାକୁ ବର୍ଣ୍ଣନା କରିବା ବା ବୁଝାଇବା ସଙ୍ଗେ ସଙ୍ଗେ ଭଷାର ବିକାଶ ଓ ଅଭିବୃଦ୍ଧି ପାଇଁ ପଥ ଉନ୍ମୁକ୍ତ ରଖେ ।

ପାରିଭାଷିକ ଶବ୍ଦାବଳୀ—

୧ । ବର୍ଣ୍ଣନାତ୍ମକ ବ୍ୟାକରଣ—Descriptive Grammar·

୨ । ସହାୟକ କ୍ରିୟା—Auxiliary Verb

୩ । ସମାପିକା କ୍ରିୟା—Finite Verb

୪ । ଅସମାପିକା କ୍ରିୟା—Non Finite Verb

୫ । ଯୌଗିକ ଅସମାପିକା କ୍ରିୟା—Compound Non-finite Verb

୬ । ସମ୍ଭାବନା କାଳ—Contingent Tense

୭ । ପୂର୍ଣ୍ଣକ୍ରିୟା 'ଣି'—Completive 'Ni'

୮ । ସର୍ତ୍ତଯୁକ୍ତ ବା ପ୍ରତିବନ୍ଧୀ ବାକ୍ୟ —Conditional Sentences

୯ । ଅନିରୂପିତ କ୍ରିୟାପଦ—Infinitive

୧୦ । କ୍ରିୟାଜ ବିଶେଷ୍ୟପଦ—Verbal Noun

୧୧ । କ୍ରିୟାଜ ବିଶେଷଣପଦ—Verbal Adjective

(ଏଇ ଆଲୋଚନାରେ ପାରିଭାଷିକ ଶବ୍ଦାବଳୀର ବ୍ୟବହାର ପାଇଁ ଓଡ଼ିଶା ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ପକ୍ଷରୁ ପ୍ରକାଶିତ 'ଭଷାତତ୍ତ୍ୱ ପରିଭଷା' (Linguistic Glossary) ପୁସ୍ତକର ସାହାଯ୍ୟ ନିଆଯାଇଛି ।)

—o—

# ଓଡ଼ିଆ ବାଚ୍ୟ

ପ୍ରଚଳିତ ଭାଷା ଓ ସେ ଭାଷାର ବ୍ୟାକରଣ ତଥା ନିୟମ ଭିତରେ ସଙ୍ଗତି ରହିବା ଆବଶ୍ୟକ । ବ୍ୟବହାରରେ ଥିବା ଭାଷାକୁ ବିଶ୍ଳେଷଣ କରି ତାହାର ବ୍ୟାକରଣଗତ ନିୟମ ତିଆରି ହେବା ଉଚିତ । ସଂସ୍କୃତ ବ୍ୟାକରଣକାରଙ୍କ ମତରେ ମଧ୍ୟ 'ପ୍ରୟୋଗ ଶରଣାଃ ବୈୟାକରଣା ।' ବ୍ୟାକରଣ ପ୍ରୟୋଗର ଅନୁସାରୀ । ବର୍ତ୍ତମାନର ପ୍ରଚଳିତ ପାରମ୍ପରିକ ବ୍ୟାକରଣ ଓ ଓଡ଼ିଆ ଭାଷାର ବ୍ୟବହାରରେ ପାର୍ଥକ୍ୟ ରହୁଥିବାରୁ ଏ ବ୍ୟାକରଣ ଭାଷା ବର୍ଣ୍ଣନାକୁ ସରଳ ନ କରି ଜଟିଳ ଓ ଦୁର୍ବୋଧ୍ୟ କରି ପକାଉଥିବା ଅନେକ ସମୟରେ ଦେଖାଯାଏ । ଫଳରେ ଏ ବ୍ୟାକରଣ ଭାଷା ବର୍ଣ୍ଣନର ସହାୟକ ନ ହୋଇ ପ୍ରତିବନ୍ଧକହିଁ ହୋଇପଡୁଛି । ଏଥିପାଇଁ ଅବଶ୍ୟ ବ୍ୟାକରଣ ସମ୍ପର୍କରେ ପୂର୍ବରୁବଦ୍ଧମୂଳ କେତେକ ଧାରଣା ମୁଖ୍ୟତଃ ଦାୟୀ ।

କେହି କେହି ମନେ କରନ୍ତି ଯେ କେବଳ ଲିଖିତ ଭାଷାର ବ୍ୟାକରଣ ସମ୍ଭବ ଓ ଯେଉଁ ଭାଷା କଥିତ ରୂପରେ ଅଛି ତାହାର ବ୍ୟାକରଣ ନାହିଁ । ଆଉ ପୁଣି କେହି କେହି ମନେ କରନ୍ତି ଯେ ବ୍ୟାକରଣ ସିଦ୍ଧ ନ ହେଲେ ଭାଷା ଭୁଲ ହୁଏ ଓ ବ୍ୟାକରଣ ଠିକ୍ ଭାବରେ, ଅଙ୍କର ନିର୍ଭୁଲ ଉତ୍ତର ପରି, ଆୟତ୍ତ କରଯାଇ ପାରିଲେ ଭାଷା ବ୍ୟବହାର ମଧ୍ୟ ଅଙ୍କପରି ନିର୍ଭୁଲ ହୋଇପାରିବ । କିନ୍ତୁ ଅନେକ ସମୟରେ ଦେଖାଯାଏ ଯେ ବ୍ୟାକରଣ ବିଷୟରେ ଅସଚେତନ ଲୋକେ, ମାତୃଭାଷା ହେଉ ବା ମାତୃଭାଷା ବ୍ୟତୀତ ଅନ୍ୟ ଯେକୌଣସି ଭାଷା ହେଉ, ତାହାକୁ ନିର୍ଭୁଲ ଓ ଦକ୍ଷତାର ସହିତ କେବଳ ଭାଷା ସଂସ୍ପର୍ଶରେ ଆସି ବ୍ୟବହାର କରିପାରନ୍ତି କି । କେବଳ ବ୍ୟାକରଣ ବିଷୟରେ ଯେଉଁମାନେ ବିଶେଷ ଆଗ୍ରହୀ ସେମାନେ ଏହାକୁ ଏକ ବିଷୟବସ୍ତୁ ଭାବରେ ନେଇ ସେଥିପ୍ରତି ଅଧିକ ଦୃଷ୍ଟି ଦେଇଥାନ୍ତି । ପୁଣି ଆଉ କେହି ମଧ୍ୟ କହନ୍ତି ଯେ ଭାଷାର ବ୍ୟାକରଣ ଥିଲେ ଭାଷା ବ୍ୟାକରଣର ଏହି ନିୟମର ପରିସର ଭିତରେ ବାନ୍ଧି ହେବାକୁ ବାଧ୍ୟ ।

ଭାଷାର କୌଣସି ଅଂଶ ବ୍ୟାକରଣ ନିୟମ ବହିର୍ଭୂତ ହେଲେ ତାହାକୁ ତୁରନ୍ତ ବାଦ ଦିଆଯିବା ଦରକାର । ବ୍ୟାକରଣର ଏପରି ନିର୍ଦ୍ଦେଶ ଥିବା ସତ୍ତ୍ୱେ, କାର୍ଯ୍ୟକ୍ଷେତ୍ରରେ ଦେଖାଯାଏ ଯେ ଭାଷା ଏ ନିୟମରେ ବାନ୍ଧ ନ ହୋଇ ଉଚ୍ଛୁଳା ନଈର ପାଣିପରି ସ୍ୱଭାବସିଦ୍ଧ ଭାବରେ ନିୟମ ବାହାରକୁ ଚାଲିଯାଏ ।

ଭାଷାର ବ୍ୟାକରଣ ବିଷୟରେ ଦିଆଯାଉଥିବା ଉପରୋକ୍ତ ମତଗୁଡ଼ିକ ଆଂଶିକ ସତ ହେଲେ ମଧ୍ୟ ସମ୍ପୂର୍ଣ୍ଣ ସତ ନୁହେଁ । ଭାଷା, କଥିତ ହେଉ ବା ଲିଖିତ ହେଉ, ସାହିତ୍ୟ ହେଉ ବା ଦଲିଲ ଦସ୍ତାବିଜ ହେଉ ବ୍ୟବହାରରେ ଥିଲେ ଭାଷାର ବ୍ୟାକରଣ ଅଛି । ଭାଷା ବ୍ୟବହାର କରିବାକୁ ବ୍ୟାକରଣ ଶିକ୍ଷା କରିବା ଅବଶ୍ୟମ୍ଭାବୀ ନ ହେଲେ ହେଁ ଆବଶ୍ୟକ ।

ଭାଷାର ବ୍ୟାକରଣ ଯେ ରହିବାକୁ ବାଧ୍ୟ ଏ ବିଷୟରେ କାହାରି ଦ୍ୱିମତ ନାହିଁ । କିନ୍ତୁ ଭାଷାକୁ ବ୍ୟାକରଣର ନିୟମ ଦ୍ୱାରା ବାନ୍ଧି, ସବୁଦିନ ପାଇଁ ଏକରୂପ କରି ରଖିବା ଏକ ବିଫଳ ପ୍ରଚେଷ୍ଟା । କାରଣ ଭାଷା ପରିବର୍ତ୍ତନଶୀଳ ଓ ସେଇ ପରିପ୍ରେକ୍ଷୀରେ ବ୍ୟାକରଣ ମଧ୍ୟ ପରିବର୍ତ୍ତନ-ଶୀଳ ହେବା ଉଚିତ । ବହୁ ଶତ ବର୍ଷ ତଳକୁ ନ ଯାଇ ମଧ୍ୟ ଆଜିକୁ ଶହେ ବର୍ଷ ତଳର ଭାଷାକୁ ଲକ୍ଷ୍ୟକଲେ ଦେଖାଯିବ ଯେ ଆଜିର ଭାଷା ଶହେ ବର୍ଷ ତଳର ଭାଷା ନୁହେଁ । କିନ୍ତୁ ଶହେ ବର୍ଷ ତଳର ବା ତା'ଠାରୁ ଆହୁରି ପ୍ରାଚୀନ ବ୍ୟାକରଣକୁ ଆଜି ମଧ୍ୟ ଅନୁସରଣ ବା ପ୍ରଚଳନ କରିବାର ପ୍ରୟାସ ଅବ୍ୟାହତ ରହିଛି । ପିଲାଟି ନିଜ ଗୋଡ଼ରେ ନିଜେ ଠିଆ ହୋଇ ଆତ୍ମନିର୍ଭରଶୀଳ ହେବାକୁ ସକ୍ଷମ ହେବା ପରେ ବାପା ମା' ସେମାନଙ୍କ ଜୀବନର ଧରାବନ୍ଧା ନିୟମକୁ ଅନୁସରଣ କରିବାକୁ ବାଧ୍ୟ କରି ତା'ର ଅଗ୍ରସର ପଥରେ ବାଧା ସୃଷ୍ଟି କରିବାର ବ୍ୟର୍ଥ ପ୍ରୟାସ ପରି ଆଜିର ଓଡ଼ିଆ ଭାଷାକୁ ସଂସ୍କୃତ ବ୍ୟାକରଣର ନିୟମ ଦ୍ୱାରା ବାନ୍ଧିବା ମଧ୍ୟ ଏକ ବ୍ୟର୍ଥ ଓ ଅଦୂରଦର୍ଶୀ ପ୍ରୟାସ । ଓଡ଼ିଆ ଭାଷା ସଂସ୍କୃତ ଭାଷା ନୁହେଁ । ତେଣୁ ଏହାର ନିଜସ୍ୱ ସ୍ୱତନ୍ତ୍ର ଭାଷା-ନିୟମ ତିଆରି ହେବା ଉଚିତ । ଓଡ଼ିଆ ବ୍ୟାକରଣର ଏଇ ପୃଷ୍ଠଭୂମି ଉପରେ 'ଓଡ଼ିଆ ବାଚ୍ୟ'ର ଆଲୋଚନା କରାଯାଉଛି ।

ପଣ୍ଡିତ ନାରାୟଣ ମହାପାତ୍ର ଓ ଅଧ୍ୟାପକ ଶ୍ରୀଧର ଦାସଙ୍କ ଦ୍ୱାରା

ପ୍ରଣୀତ 'ସର୍ବସାର ବ୍ୟାକରଣ' ବହିକୁ ଏଠାରେ ଆଲୋଚନାର ଏକ ନମୁନା ଭାବରେ ଗ୍ରହଣ କରଯାଉଛି । 'ସର୍ବସାର ବ୍ୟାକରଣ' ବହିରେ ସଂସ୍କୃତ ବ୍ୟାକରଣକୁ ଅନୁସରଣ କରି 'ଓଡ଼ିଆ ବାଚ୍ୟ' ଓ 'ବାଚ୍ୟ ପରିବର୍ତ୍ତନ'ର ଆଲୋଚନା 'କ୍ରିୟାର ବାଚ୍ୟ' ନାମକ ଏକ ଛୋଟ ଅନୁଚ୍ଛେଦଟିରେ ନିମ୍ନଲିଖିତ କ୍ରମେ କରଯାଇଛି । ଆଲୋଚନାର ସୁବିଧା ପାଇଁ ପୁରା ଅନୁଚ୍ଛେଦଟିକୁ ଏଠାରେ ଉଦ୍ଧାର କରଯାଉଛି :

କ୍ରିୟାର ବାଚ୍ୟ : ଓଡ଼ିଆ ଭାଷାରେ କ୍ରିୟାର ବାଚ୍ୟ ଚତୁର୍ବିଧ- କର୍ତ୍ତୃବାଚ୍ୟ, କର୍ମବାଚ୍ୟ, ଭାବବାଚ୍ୟ ଓ କର୍ମକର୍ତ୍ତୃବାଚ୍ୟ ।

କର୍ତ୍ତୃବାଚ୍ୟ—ଯେଉଁ ବାକ୍ୟରେ କ୍ରିୟାର ପ୍ରକୃତ ସାଧକ କର୍ତ୍ତୃପଦ ହୋଇଥାଏ ଏବଂ କ୍ରିୟାପଦ ସେହି କର୍ତ୍ତାର ଅନୁଗାମୀ ହୋଇଥାଏ, ତାହାକୁ କର୍ତ୍ତୃବାଚ୍ୟର ବାକ୍ୟ ଏବଂ ସେହି କ୍ରିୟାର କର୍ତ୍ତୃବାଚ୍ୟ ବୋଲି କୁହାଯାଏ, ଯଥା—ପିଲାଟି ଦୌଡ଼ିଲା । ମୁଁ ଭାତ ଖାଉଅଛି ।

କର୍ମବାଚ୍ୟ-ଯେଉଁ ବାକ୍ୟରେ କର୍ମପଦ କର୍ତ୍ତୃପଦ ରୂପେ ବ୍ୟବହୃତ ହୋଇଥାଏ ଏବଂ କ୍ରିୟା ତାହାର ଅନୁଗାମୀ ହୋଇଥାଏ, ତାହାକୁ କର୍ମବାଚ୍ୟର ବାକ୍ୟ ବୋଲାଯାଏ ଏବଂ ଉକ୍ତ କ୍ରିୟାର କର୍ମବାଚ୍ୟ ହୁଏ; ଯଥା—ରାବଣ ରାମଙ୍କ ଦ୍ୱାରା ହତ ହେଲା ।

ଏଠାରେ ରାବଣ ପ୍ରକୃତରେ କର୍ମ, ମାତ୍ର ଏହି ବାକ୍ୟରେ ଏହା ପ୍ରଥମା ବିଭକ୍ତିରେ ବ୍ୟବହୃତ ହୋଇଅଛି । ସେହିପରି 'ତା ଦେହି ଏ କାମ ହେବ' ବାକ୍ୟରେ 'କାମ' କର୍ମପଦ ହେଲେହେଁ କର୍ତ୍ତୃପଦ ରୂପେ ବ୍ୟବହୃତ ହୋଇ ପ୍ରଥମା ବିଭକ୍ତି ହୋଇଥିବାରୁ ଏହି ବାକ୍ୟଟି କର୍ମବାଚ୍ୟର ବାକ୍ୟ ଏବଂ ଏହାର କ୍ରିୟା କର୍ମବାଚ୍ୟରେ ଅଛି ।

ଭାବବାଚ୍ୟ-- ଯେଉଁ ବାକ୍ୟରେ କ୍ରିୟାର କର୍ମ ନଥାଏ ଏବଂ କ୍ରିୟାପଦ ପ୍ରକୃତରେ କ୍ରିୟା ସାଧନ କରୁଥିବା କର୍ତ୍ତାର ଅନୁଗାମୀ ହୋଇ ନଥାଏ, ତାହାକୁ ଭାବବାଚ୍ୟର ବାକ୍ୟ କୁହାଯାଏ; ଯଥା - ମୋର ଖିଆ ହେଲା ନାହିଁ । ତାହାକୁ ଆସିବାକୁ ହେବ ।

କର୍ମକର୍ତ୍ତୃବାଚ୍ୟ-ଯେଉଁ ବାକ୍ୟରେ କର୍ମପଦ କର୍ତ୍ତୃପଦ ପରି ବ୍ୟବହୃତ

ହୋଇଥାଏ, କର୍ମ ସ୍ୱୟଂସିଦ୍ଧ ହେଲାପରି ଜଣାପଡ଼େ ଏବଂ କ୍ରିୟା ସକର୍ମକ ଧାତୁର ହେଲେହେଁ ଅକର୍ମକ ପରି ବ୍ୟବହୃତ ହୋଇଥାଏ, ତାହାର କର୍ମ-କର୍ତ୍ତୃବାଚ୍ୟ ହୁଏ; ଯଥା—ଘଣ୍ଟା ବାଜୁଛି । ହାଣ୍ଡିଟି ଭାଙ୍ଗିଗଲା । ଫଳ ପାଚିଲା । ଭାତ ଫୁଟୁଛି ।

(ଏଠାରେ କର୍ମକର୍ତ୍ତୃ ବାଚ୍ୟ ପାଇଁ ଏକ ସଂସ୍କୃତ ଶ୍ଳୋକ ଉଦ୍ଧାର କରାଯାଇଛି—କ୍ରିୟମାଣନ୍ତୁ ଯତକର୍ମ ସ୍ୱୟମେବହି ସିଧ୍ୟତି
ସୁକରି ସ୍ୱୈ ଗୁଣୈ କର୍ତ୍ତୃକର୍ମ କବେ୍ୈତି ତତ୍ ବିଦାଃ ।)

ବାଚ୍ୟ ପରିବର୍ତ୍ତନ—କର୍ତ୍ତୃବାଚ୍ୟରେ କ୍ରିୟା ସକର୍ମକ ବା ଅକର୍ମକ ହୋଇପାରେ । କ୍ରିୟା ସକର୍ମକ ହୋଇଥିଲେ ବାକ୍ୟଟିକୁ କର୍ମବାଚ୍ୟରେ ଏବଂ କ୍ରିୟା ଅକର୍ମକ ହୋଇଥିଲେ ବାକ୍ୟଟିକୁ ଭାବବାଚ୍ୟରେ ପରିବର୍ତ୍ତନ କରାଯାଇପାରେ । (କର୍ତ୍ତୃବାଚ୍ୟର ବାକ୍ୟକୁ କର୍ମ ବା ଭାବବାଚ୍ୟରେ ପରିବର୍ତ୍ତନ କଲେ କର୍ତ୍ତୃବାଚ୍ୟରେ ଯେ କର୍ତ୍ତା ଥାଏ, ସେଥିରେ ଦ୍ୱାରା, କର୍ତ୍ତୃକ, ଦେହିଁ,ରେ ପ୍ରଭୃତି ଲାଗେ । କର୍ତ୍ତୃବାଚ୍ୟରେ ଥିବା କର୍ମର କର୍ମବାଚ୍ୟରେ ପ୍ରଥମା ବିଭକ୍ତି ହୁଏ ଏବଂ ଭାବବାଚ୍ୟରେ କ୍ରିୟାର ଅର୍ଥ (ଭାବ) ପ୍ରଧାନ ପଦ ହୁଏ, ଅର୍ଥାତ୍ ପ୍ରଥମା ବିଭକ୍ତି ଗ୍ରହଣ କରେ ।) ନିମ୍ନରେ ଏ ପ୍ରକାର ପରିବର୍ତ୍ତନର କେତେକ ଉଦାହରଣ ଦିଆଗଲା —

୧ । ଆମ୍ଭେମାନେ କାଳିଦାସଙ୍କ ଜୀବନୀ ଜାଣିନାହୁଁ । (କର୍ତ୍ତୃବାଚ୍ୟ)

୨ । ଆମ୍ଭମାନଙ୍କୁ କାଳିଦାସଙ୍କ ଜୀବନୀ ଜଣାନାହିଁ । (କର୍ମବାଚ୍ୟ)

୧ । ଏ ପିଲା ମୋତେ ବହୁତ କଷ୍ଟ ଦେଲାଣି । (କର୍ତ୍ତୃବାଚ୍ୟ)

୨ । ଏ ପିଲାଟି ଦ୍ୱାରା ମୋର ବହୁତ କଷ୍ଟ ହେଲାଣି । (କର୍ମବାଚ୍ୟ)

୧ । କିଏ ଏ ବହି ଲେଖିଛି ? (କର୍ତ୍ତୃବାଚ୍ୟ)

୨ । କାହାଦ୍ୱାରା ଏ ବହି ଲେଖା ହୋଇଅଛି ? (କର୍ମବାଚ୍ୟ)

୧ । ଆପଣ କେତେବେଳେ ଯିବେ ? (କର୍ତ୍ତୃବାଚ୍ୟ)

୨ । କେତେବେଳେ ଆପଣଙ୍କର ଯିବା ହେବ ? (ଭାବବାଚ୍ୟ)

୧ । କାଲି ମୁଁ ଢେରିରେ ଶୋଇଥିଲି । (କର୍ତ୍ତୃବାଚ୍ୟ)

୨ । କାଲି ମୋର ଡେରିରେ ଶୁଆ ହୋଇଥିଲା (ଭାବବାଚ୍ୟ)

୧ । ପିଲାମାନେ ଦଉଡ଼ୁ ଅଛନ୍ତି । (କର୍ତ୍ତୃବାଚ୍ୟ)

୨ । ପିଲାମାନଙ୍କର ଦଉଡ଼ା ହେଉଅଛି । (ଭାବବାଚ୍ୟ)

କେବଳ 'ସର୍ବସାର ବ୍ୟାକରଣ' ନୁହେଁ ଅନ୍ୟ ଓଡ଼ିଆ ବ୍ୟାକରଣ ବହିମାନଙ୍କରେ ମଧ୍ୟ ଏହାଠାରୁ ଅଧିକ କିଛି କୁହାଯାଇନି । ପଣ୍ଡିତ ଗୋପୀନାଥ ନନ୍ଦଙ୍କ 'ଓଡ଼ିଆ ଭାଷା ତତ୍ତ୍ୱ' ବହି ଯୋଉଥିରେ କି ଓଡ଼ିଆ ଭାଷାର ତତ୍ତ୍ୱ ତଥା ବ୍ୟାକରଣ ଆଲୋଚନା କରାଯାଇଛି ସେଥିରେ ମଧ୍ୟ ଓଡ଼ିଆ ବାଚ୍ୟ ବିଷୟରେ କିଛି କୁହାଯାଇନି । ମନେହୁଏ ଯେ 'ଓଡ଼ିଆ ଭାଷାତତ୍ତ୍ୱ'ରେ ଓଡ଼ିଆର ସ୍ୱାତନ୍ତ୍ର୍ୟ ପ୍ରକାଶ କରିବାକୁ ଯାଇ ଏହାକୁ ସଂସ୍କୃତପ୍ରାକୃତ ନିୟମ ଦ୍ୱାରା ବାରମ୍ବାର ଛନ୍ଦିବାକୁ ଚେଷ୍ଟା କରା-ଯାଇଛି । 'ଓଡ଼ିଆ ଭାଷାତତ୍ତ୍ୱ'ର 'ଗ୍ରନ୍ଥ ପ୍ରବେଶ'ରେ ପଣ୍ଡିତ ନୀଳକଣ୍ଠ ଦାସ ଗ୍ରନ୍ଥର ସମୀକ୍ଷା କରିବାକୁ ଯାଇ କହିଛନ୍ତି, "ସେ ସଂସ୍କୃତ ଭିତ୍ତିରେ ଯେପରି ପ୍ରାକୃତ ପ୍ରତିଷ୍ଠିତ ବୋଲି ସେ ବୁଝିଥିଲେ, ସେହିପରି ସାକ୍ଷାତ ପ୍ରାକୃତ ଭିତରେ ଓଡ଼ିଆର ଆଲୋଚନା ସ୍ଥିର କରି, ନନ୍ଦେ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟରେ ସାର୍ବଜନୀନତା ଫୁଟାଇବାର ପ୍ରୟାସ କରିଛନ୍ତି । ଆଉ ଅଧିକ ଦୂରକୁ ସେ ଯାଇ ନାହାନ୍ତି । ପୁଣି ଓଡ଼ିଆରେ ସେ ଯେଉଁ ସ୍ୱାତନ୍ତ୍ର୍ୟ ଦେଖାଇଛନ୍ତି ତାହା ଅତି ସୁସ୍ପଷ୍ଟ ଓ ସୁଗମ ହେଲେହେଁ, ସିଂହାବଲୋକନ ନ୍ୟାୟରେ ବାରମ୍ବାର ପ୍ରାକୃତ ମାର୍ଗରେ ସଂସ୍କୃତକୁ ଫେରୁଅଛି । ତେଣୁ ସାଂସ୍କୃତିକ ଭିତ୍ତିରେ ବାହାରେ ଓ ଦୂରରେ ଓଡ଼ିଆ ଭାଷାର ଯେ ଗଭୀର ସ୍ୱାତନ୍ତ୍ର୍ୟମୂଳକ ସାର୍ବଜନୀନ ପରିସର ଖୋଜା ଯାଇପାରେ, ତାହା କାର୍ଯ୍ୟରେ ଗ୍ରହଣ କରିବାକୁ ନନ୍ଦେ ସମର୍ଥ ହୋଇ ନାହାନ୍ତି" ।

ପଣ୍ଡିତ ନୀଳକଣ୍ଠ 'ଗ୍ରନ୍ଥ ପ୍ରବେଶ'ରେ 'ଓଡ଼ିଆ ଭାଷାତତ୍ତ୍ୱ'ର ସମାଲୋଚନା କରିବାକୁ ଯାଇ ଏହାର କେତେକ ଅଭାବ ଦର୍ଶାଇବା ଛଳରେ ସାମାନ୍ୟ ଅଥଚ ଅତ୍ୟନ୍ତ ମୂଲ୍ୟବାନ ସୂଚନା ଦେଇ ଯାଇଛନ୍ତି । ସେ ଲେଖିଛନ୍ତି "ଯେଉଁ ସବୁ ଶବ୍ଦ ଭାଷାକୁ ଆସୁଅଛି, ତାହା କିନ୍ତୁ ଅବିକଳ ସେହିପରି ରହୁନାହିଁ; ଭାଷାର ସ୍ୱତନ୍ତ୍ର ପ୍ରକୃତିରେ ପଡ଼ି ପରିବର୍ତ୍ତିତ ହେଉ-ଅଛି । ସେମାନଙ୍କର ସ୍ୱର ବ୍ୟଞ୍ଜନ ବିନ୍ୟାସର ଯଥେଷ୍ଟ ଆକୁଞ୍ଚନ, ପ୍ରସାରଣ ଓ ବିବର୍ତ୍ତନ ହେଉଅଛି । ଏହି ସ୍ୱର ବା ବର୍ଣ୍ଣନିୟମର ପରିଣତି ପ୍ରକ୍ରିୟା

ଓ ପ୍ରଣାଳୀକୁ ଭାଷାର ପ୍ରାଣ ଓ ବ୍ୟାକରଣ ନିୟମକୁ ତାହାର ସ୍ଥୂଳଶରୀର କହିଲେ ଚଳେ । ପୁଣି ପଦମାନଙ୍କର ଅନ୍ୱୟର ଧାର ବ୍ୟାକରଣର ପ୍ରଧାନ ଉପାଦାନ ଏବଂ ଏହି ଅନ୍ୱୟଧାରରେ ବିଭକ୍ତି ବିଶିଷ୍ଟ ଆଲୋଚ୍ୟ ବସ୍ତୁ । ସେହି ବିଭକ୍ତି ଦୁଇ ଭାଗ : କାରକ ଓ କ୍ରିୟା ବିଭକ୍ତି । ଫଳତଃ ବାକ୍ୟଟି ଦୁଇ ପ୍ରଧାନ ଭାଗରେ ବିଭକ୍ତ; ଯଥା—କାରକ ବା ବିଷୟଭାଗ ଓ କ୍ରିୟା ବା ବାଚ୍ୟଭାଗ । ଏ ଦୁଇଟି ମଧ୍ୟରେ କ୍ରିୟା ବା ବାଚ୍ୟଭାଗ ପ୍ରଧାନ । କାରଣ, ଏହି ଭାଗ ବାକ୍ୟରେ ଭାବପ୍ରକାଶର ପ୍ରଧାନ ଉପକରଣ । ପ୍ରଧାନ ଓ ସହାୟକ କ୍ରିୟା ଏବଂ ସେମାନଙ୍କ ବିଶେଷକ ମାନଙ୍କର ଯଥା ପ୍ରୟୋଗ ଦ୍ୱାରା ବିଷୟ ସମ୍ବନ୍ଧରେ ଯାହା କୁହାଯାଏ, ତାହାର ସମ୍ୟକ ଓ ସର୍ବାଙ୍ଗୀନ ଅବବୋଧ ସ୍ପଷ୍ଟ ହୁଏ । ମାତ୍ର ଦୁଃଖର କଥା, ପଣ୍ଡିତ ଗୋପୀନାଥ ନନ୍ଦଙ୍କ 'ଭାଷାତତ୍ତ୍ୱ ଗ୍ରନ୍ଥ'ର କ୍ରିୟାଭାଗ ଲେଖାହୋଇ ପାରିନାହିଁ ଏବଂ ଏଣୁ ଗ୍ରନ୍ଥଟି ଯଥାର୍ଥରେ ଅପୂର୍ଣ୍ଣ ଅଛି ।''

ଡଃ ଦେବୀ ପ୍ରସନ୍ନ ପଟ୍ଟନାୟକ ଓ ଶ୍ରୀ ଗଗନେନ୍ଦ୍ର ନାଥ ଦାସ, ସେମାନଙ୍କର 'Conversational Oriya' ବହିରେ ବାକ୍ୟ ବିଷୟରେ କହିଛନ୍ତି ଯେ ଓଡ଼ିଆରେ passive-like construction ଅଛି । ସେମାନେ କହନ୍ତି :

(I) Oriya does not have a separate passive construction But some of the followings are relics of passive construction at an earlier stage. Note the transformations :

ମୁଁ ଭଲ ପାଏ ।

ମତେ ଭଲ ଲାଗେ ।

(II) Some constructions of this type are frequent., but cannot be transformed to a simple kernel sentence. These may be treated as special collocations- In this construction the subject always takes the post position-- କୁ or its variants.

| | | |
|---|---|---|
| | ଭୋକ | |
| ତାକୁ | ଶୋଷ | |
| ତତେ | ନିଦ | ହେଉଛି ।, |
| | ଡର | |
| | ଶୀତ | |

ପୁଣି ସେମାନେ ଅନ୍ୟତ୍ର ବାଚ୍ୟ ନାଁ ନ ଦେଇ କ୍ରିୟା ବିଷୟରେ ସୂଚନା ଦେବାକୁ ଯାଇ କହିଛନ୍ତି :

Note the transformation of the sentence ମୁଁ ଯିବି to ମତେ ଯିବାକୁ ହେବ ।

In such constructions :

(i Post-position-ତେ,—କୁ are added to the subject.

ମତେ ଯିବାକୁ ହେବ ।

ତାକୁ ବସିବାକୁ ହେବ ।

ଆପଣଙ୍କୁ କହିବାକୁ ହେବ ।

(ii) Post-position କୁ is added to the inffnitival form of the verb.

(iii) the verb ହେ—with appropriate tense suffix is added to close the construction.

ମତେ ଖାଇବାକୁ ହେଲା ।

ଆପଣଙ୍କୁ କହିବାକୁ ହେଉଛି ।

ତାକୁ ଯିବାକୁ ହେଉଛି ।

Note the person-number suffix of the verb from remain 'invariant irrespective of the person as subject referent.'

Conversational Oriya ବହିରେ ପ୍ରଥମ କରି ଓଡ଼ିଆ ଭାଷାର ଏକ ଶୃଙ୍ଖଳିତ ଭାଷାଭିତ୍ତିକ ଓଡ଼ିଆ ବ୍ୟାକରଣ ତିଆରି ପାଇଁ ପ୍ରାରମ୍ଭିକ ପଦକ୍ଷେପ ନିଆଯାଇଛି । ଏଣୁ ଓଡ଼ିଆ ବାଚ୍ୟ ବିଷୟରେ ଏଥିରେ କେବଳ ସୂଚନା ହିଁ ଅଛି ।

ବର୍ତ୍ତମାନ ବାଚ୍ୟ ବିଷୟରେ ଆଲୋଚନା କରିବାକୁ ଯିବା ପୂର୍ବରୁ ଜାଣିବା ଦରକାର ଯେ ବାଚ୍ୟ କ'ଣ ? ଓଡ଼ିଆ ଭାଷାରେ କେତୋଟି ବାଚ୍ୟର ବ୍ୟବହାର ଅଛି ? ବାଚ୍ୟ ପରିବର୍ତ୍ତନ କ'ଣ ? ପୁଣି ବାଚ୍ୟ ପରିବର୍ତ୍ତନ ଦ୍ୱାରା ବାକ୍ୟର ଗଠନରେ କି ପରିବର୍ତ୍ତନ ହୁଏ ଏବଂ ଏ ପରିବର୍ତ୍ତନ ଦ୍ୱାରା ବାକ୍ୟରେ ଅର୍ଥଗତ ପାର୍ଥକ୍ୟ ହୁଏ କି ନାହିଁ ? ଏହିସବୁ ପ୍ରଶ୍ନର ଆଲୋଚନାରୁ ଓଡ଼ିଆ ବାଚ୍ୟ ବିଷୟରେ ସମ୍ୟକ୍ ଧାରଣା କରାଯାଇପାରେ ।

ପଣ୍ଡିତ ଗୋପାଳଚନ୍ଦ୍ର ପ୍ରହରାଜ ତାଙ୍କ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ'ରେ ବାଚ୍ୟର ବ୍ୟାକରଣଗତ ଅର୍ଥ ବୁଝାଇବାକୁ ଯାଇ ଲେଖିଛନ୍ତି, "ବାକ୍ୟର ଯେଉଁ ପ୍ରକୃତି ଦ୍ୱାରା ଅଭିଧା ବା ବକ୍ତାଙ୍କର ଇଚ୍ଛା ଜଣାଯାଏ ଓ ବାକ୍ୟରେ ବ୍ୟବହୃତ କ୍ରିୟାର ପ୍ରକୃତି ଜଣାଯାଏ" ତାହା ବାଚ୍ୟ । ପୁଣି ବିଶେଷ ଦ୍ରଷ୍ଟବ୍ୟ ଭାବରେ ସେ କହିଛନ୍ତି ଯେ, ସଂସ୍କୃତ ବ୍ୟାକରଣରେ ବାଚ୍ୟ ୮ ପ୍ରକାର, ଯଥା—କର୍ତ୍ତୃ, କର୍ମ, କରଣ, ସଂପ୍ରଦାନ, ଅପାଦାନ, ଅଧିକରଣ, ଭାବ ଓ କର୍ମକର୍ତ୍ତୃ । ଓଡ଼ିଆ ବ୍ୟାକରଣରେ ବାକ୍ୟର ବାଚ୍ୟ ଚାରି ପ୍ରକାର—କର୍ତ୍ତୃ, କର୍ମ, ଭାବ ଓ କର୍ମକର୍ତ୍ତୃ ବାଚ୍ୟ । ଏଠାରେ ସଂସ୍କୃତ ବ୍ୟାକରଣର ୮ ପ୍ରକାର ବାଚ୍ୟ ମଧ୍ୟରୁ ଓଡ଼ିଆ ବ୍ୟାକରଣକୁ ୪ ପ୍ରକାର ବାଚ୍ୟ ଆସି ଥିବାର ଲକ୍ଷ୍ୟ କରାଯାଇପାରେ ।

ଓଡ଼ିଆରେ କ୍ରିୟାର ବାଚ୍ୟ ମୁଖ୍ୟତଃ ଦୁଇ ପ୍ରକାର । କ୍ରିୟାରେ ପ୍ରକାଶ ପାଉଥିବା ଭାବ, କ୍ରିୟାର ପ୍ରକୃତି ଓ ଗଠନ ଏବଂ ସର୍ବୋପରି କ୍ରିୟାର କର୍ତ୍ତା ସହିତ ଏବଂ କ୍ରିୟାର କର୍ତ୍ତାର କର୍ମ ସହିତ ସମ୍ପର୍କରୁ ବାଚ୍ୟ ଜଣାପଡେ । କ୍ରିୟାର କର୍ତ୍ତା ସହିତ ସମ୍ପର୍କକୁ କର୍ତ୍ତୃବାଚ୍ୟ ଓ

କ୍ରିୟାର କର୍ତ୍ତାର କର୍ମ ସହିତ ସମ୍ପର୍କକୁ କର୍ମବାଚ୍ୟ କୁହାଯାଏ ।

କର୍ତ୍ତୃବାଚ୍ୟ—କର୍ତ୍ତୃବାଚ୍ୟର ବାକ୍ୟରେ କ୍ରିୟା କର୍ତ୍ତାଦ୍ୱାରା ନିୟନ୍ତ୍ରିତ ହୁଏ ଓ କର୍ତ୍ତାର ଅନୁଗାମୀ ହୁଏ । ଅର୍ଥାତ୍ କର୍ତ୍ତାର ବଚନ ଓ ପୁରୁଷ ଦ୍ୱାରା କ୍ରିୟାର ବଚନ ଓ ପୁରୁଷ ନିୟନ୍ତ୍ରିତ ଏବଂ କର୍ତ୍ତାର ଆବଶ୍ୟକୀୟ କ୍ରିୟାରେ କାଳ ଓ ସହାୟକ କ୍ରିୟା (auxiliary) ଯୋଗ ହୋଇ କ୍ରିୟାଟି ସଂପୂର୍ଣ୍ଣ ହୁଏ । ଏହି କ୍ରିୟାରେ ବ୍ୟବହାର ପାଇଁ କର୍ତ୍ତୃବାଚ୍ୟର ସ୍ୱତନ୍ତ୍ର ପ୍ରତ୍ୟୟ (suffix) ଚିହ୍ନ ନାହିଁ । ନିମ୍ନଲିଖିତ କର୍ତ୍ତୃବାଚ୍ୟର ବାକ୍ୟକୁ ଉଦାହରଣ ସ୍ୱରୂପ ଲକ୍ଷ୍ୟ କରାଯାଇପାରେ ।

ମୁଁ କାମ କରୁଛି ।

ଆପଣ କାମ କରୁଛନ୍ତି ।

ସେ କାମ କରୁଛି ।

ଉପରୋକ୍ତ ୩ଟି ଯାକ ବାକ୍ୟରେ କର୍ତ୍ତାର 'କର' ଧାତୁରେ କାଳ ସହିତ ସହାୟକ କ୍ରିୟା ଓ କର୍ତ୍ତାର ପୁରୁଷ ଓ ବଚନ ଯୋଗ କରାଯାଉଛି । ସୂତ୍ର ଅନୁସାରେ କର୍ତ୍ତୃବାଚ୍ୟର କ୍ରିୟାକୁ ଏହିପରି କୁହାଯାଇପାରେ :

ମୂଳକ୍ରିୟା + କାଳ (ପ୍ରତ୍ୟୟ) + ସହାୟକ କ୍ରିୟା + ବଚନ ଓ ପୁରୁଷ (ପ୍ରତ୍ୟୟ)

(ମୁଁ) କର୍ + ଉ + ଅଛ୍ + ଇ—କରୁଛି

(ଆପଣ) କର୍ + ଉ + ଅଛ + ଅନ୍ତି—କରୁଛନ୍ତି

କର୍ମବାଚ୍ୟ—କର୍ମବାଚ୍ୟର ଆଲୋଚନା ପାଇଁ ନିମ୍ନଲିଖିତ ବାକ୍ୟଗୁଡ଼ିକୁ ଲକ୍ଷ୍ୟ କରାଯାଇପାରେ ।

(କ) ୧ - ମୋ' ଦ୍ୱାରା ଏ କାମ କରାଯାଇଛି ।

ମୋତେ କାମ ଦିଆଯାଇଛି ।

ତାଙ୍କ ଦ୍ୱାରା ଏ କାମ କରାଯାଇ ପାରନ୍ତା ।

ସେମାନଙ୍କ ପାଇଁ ଟଙ୍କା ଅଣାଗଲା ।
ଗଛରୁ ଫଳ ତୋଳା ହେଲା ।
ଲାଇବ୍ରେରୀ ପାଇଁ ବହି କିଣା ହେଲା ।
(ତାଙ୍କୁ) ଏଠି କେତେ ଟଙ୍କା ଦିଆଯାଉଛି ?
(ତୋ' ପାଇଁ) ଏମିତି କାମ ସବୁ କାହିଁକି କରାଗଲା ?

୨— ତାଙ୍କୁ ଭଲ ଦିଶୁନି / ଦେଖାଯାଉନି ।
ଇଟରକୁ କିଛି ଶୁଭୁ ନି / ଶୁଭଯାଉନି / ଶୁଣାଯାଉନି ।

(ଖ) ମୋର କାମ ଶେଷ ହେଲାଣି ।
ତାଙ୍କ ଦେହ କ୍ରମେ ଭଲ ହେଉଛି ।
ତା' ସହିତ ମୋର କଥାବାର୍ତ୍ତା ହେଉଛି ।

(ଗ) ମତେ ଯିବାକୁ ହେଲା ।
ତାକୁ ସବୁ କାମ କରିବାକୁ ପଡ଼ୁଛି ।

(ଘ) ୧—ସେମାନଙ୍କର ଖିଆ ସରିଛି ।
ତା'ର ସିନେମା ଦେଖା ସରିଛି ।
୨—ଆପଣଙ୍କର କାମ ସରିଛି ।
ତାଙ୍କର ହାତରୁ ଟଙ୍କା ସରିଛି ।

(ଙ) ତାକୁ କାମ କରିବାକୁ ଭଲଲାଗେ ।
ମୋ' ସହିତ ତା'ର ବାହାଘର ଲାଗିଥିଲା ।

(ଚ) ୧— ତମ କଥା ମତେ ଜଣାଅଛି ।
ଏ ବିଷୟ ତ ସମସ୍ତଙ୍କୁ ଜଣାନାହିଁ ।
୨—ତାଙ୍କ ବିଷୟ ସବୁ ଜଣା ପଡ଼ଲାଣି ।
୩—ଜଣାଯାଉଛି ଯେ ଆଜି ଆସିବେ ନି ।

କର୍ମବାଚ୍ୟରେ କ୍ରିୟାରେ କର୍ମବାଚ୍ୟ ପ୍ରତ୍ୟୟ—'ଆ'—ଯୋଗ କରି ସେଥିରେ ଯା— / ହେ—ଧାତୁ ସହିତ ଆବଶ୍ୟକୀୟ କାଳ ଓ ସହାୟକ କ୍ରିୟା ଯୋଗ ହୁଏ ଓ କର୍ମବାଚ୍ୟର କ୍ରିୟାର ସର୍ବଦା ଏକବଚନାନ୍ତ ରୂପ ହୁଏ । କର୍ମବାଚ୍ୟର କ୍ରିୟା କର୍ତ୍ତୃବାଚ୍ୟର କ୍ରିୟାପରି କର୍ତ୍ତାର ଅନୁଗାମୀ ନ ହୋଇ କର୍ତ୍ତାର କର୍ମକୁ ଅନୁସରଣ କରେ ବୋଲି ଏହାର ଏକବଚନାନ୍ତ ରୂପ ହୋଇଥାଏ । ଉପରୋକ୍ତ ଉଦାହରଣରେ କର୍ମବାଚ୍ୟ (କ)ରେ ଥିବା ବାକ୍ୟଗୁଡ଼ିକ ଦ୍ରଷ୍ଟବ୍ୟ । ସୂତ୍ର ଅନୁସାରେ ଏହାକୁ ନିମ୍ନୋକ୍ତ ମତେ ପ୍ରକାଶ କରଯାଇପାରେ—

ମୂଳକ୍ରିୟା + କର୍ମବାଚ୍ୟ-ଆ + ଯା- /ହେ + କାଳ + ଏକବଚନାନ୍ତ ସହାୟକ କ୍ରିୟା

କର୍ + ଆ + ଯା + ଇ + ଅଛ୍ + ଇ = କରଯାଇଛି ।

କର୍ + ଆ + ହେ + ଇଲ୍ (ଅତୀତ ପ୍ରତ୍ୟୟ) + ଆ = କରହେଲା

କର୍ମବାଚ୍ୟର କ୍ରିୟା କର୍ତ୍ତାର କର୍ମକୁ ଅନୁସରଣ କରୁଥିବାରୁ ଏହାର କର୍ତ୍ତା ପ୍ରତ୍ୟକ୍ଷ ନ ହୋଇ ପରୋକ୍ଷ ହୁଏ ଓ କର୍ତ୍ତାରେ ଆବଶ୍ୟକୀୟ ର, ଙ୍କ, ଙ୍କର, କୁ, ଙ୍କୁ, ରୁ, ଠାରୁ ଓ ରେ ପ୍ରଭୃତି ବିଭକ୍ତି ପ୍ରତ୍ୟୟ (post-position) ଯୁକ୍ତ କରିବାକୁ ହୁଏ । କେତେକ ଆବଶ୍ୟକୀୟ କ୍ଷେତ୍ରରେ ଉପରୋକ୍ତ ବିଭକ୍ତି ପ୍ରତ୍ୟୟ ସହିତ ବା ପ୍ରତ୍ୟୟ ସ୍ଥାନରେ ଦ୍ୱାରା, ପାଇଁ, ପ୍ରତି, ପାଖ, ପକ୍ଷ, ଯୋଗି, ଲାଗି, ସହିତ, ଉପରେ, ଉବରେ ପ୍ରଭୃତି ଶବ୍ଦ ପ୍ରତ୍ୟୟ post-position ବ୍ୟବହାର କରଯାଏ । କର୍ମବାଚ୍ୟରେ କର୍ତ୍ତା ସ୍ଥାନରେ ସାଧାରଣତଃ ବିଶେଷ୍ୟ ବା ସର୍ବନାମର ପ୍ରତ୍ୟୟାନ୍ତ ରୂପ ବ୍ୟବହୃତ ହୋଇଥାଏ । ସ୍ଥାନ ବିଶେଷରେ କର୍ତ୍ତା ସ୍ଥାନରେ ସ୍ଥାନ ଓ ନିର୍ଦ୍ଦେଶ ବାଚକ (ଯେପରି ଏଠି, ଏ, ସେ) ଓ ଅବସ୍ଥା ସୂଚକ (ଯେପରି ଏମିତି, ସେମିତି, ଏଣିକି) ସର୍ବନାମ ପଦ ମଧ୍ୟ ବ୍ୟବହାର ହୁଏ ।

କର୍ମବାଚ୍ୟ (କ-୨ରେ) ଥିବା ଦିଶିବା / ଦୁଶିବା ଓ ଶୁଭିବା ଶୁଣିବା କ୍ରିୟା ଦୁଇଟି କର୍ମବାଚ୍ୟ କ୍ରିୟା । ଏ କ୍ରିୟା ବ୍ୟବହାରରେ କେବଳ କର୍ମବାଚ୍ୟ ବାକ୍ୟ ଗଠିତ ହୋଇପାରେ । ପୁଣି ଆନୀତ, ଗଠିତ, ପ୍ରେରିତ, ପ୍ରଣୀତ ପ୍ରଭୃତି 'ତ' ପ୍ରତ୍ୟାୟାନ୍ତ କ୍ରିୟା ଦ୍ୱାରା ମଧ୍ୟ କର୍ମବାଚ୍ୟ ବାକ୍ୟ ଗଠିତ ହୁଏ ।

କର୍ମବାଚ୍ୟର ଉପରୋକ୍ତ ଗଠନ ଛଡ଼ା ସାମାନ୍ୟ ବ୍ୟତିକ୍ରମ ଥାଇ ଆଉ କେତେକ କର୍ମବାଚ୍ୟ ବ୍ୟବହାର ଦେଖାଯାଏ । ବ୍ୟତିକ୍ରମ ଗୁଡ଼ିକରେ କର୍ମବାଚ୍ୟର ସାଦୃଶ୍ୟ ଅଧିକ ଥିବାରୁ ଏପରି ଗଠନକୁ 'ସାଦୃଶ୍ୟ-କର୍ମବାଚ୍ୟ' (passive-live) ନାମ ଦିଆଯାଇପାରେ । ଏଥିପାଇଁ ଉପରେ ଥିବା କର୍ମବାଚ୍ୟ (ଖ) (ଗ) (ଘ) (ଙ) (ଚ) ଉଦାହରଣଗୁଡ଼ିକ ଦ୍ରଷ୍ଟବ୍ୟ । ଏ ଉଦାହରଣରେ କେତେକ ବିଶେଷ କ୍ରିୟାର ବ୍ୟବହାର ଦ୍ୱାରା ସାମାନ୍ୟ ପରିବର୍ତ୍ତନ ହୋଇ କର୍ମବାଚ୍ୟ ବାକ୍ୟ ଗଠିତ ହୋଇଛି । ଉ-(ଖ)ରେ 'ହେବା' ଧାତୁ ସହିତ ବିଶେଷ ବା ବିଶେଷଣ ପଦର ପୂର୍ବ-ସଂଯୋଗ (Prefixed) ହୋଇ କର୍ମବାଚ୍ୟ ହୋଇଛି । 'ଶେଷ ହେବା', 'କଥାବାର୍ତ୍ତା

ହେବା’, ‘ଭଲହେବା’, ‘କାମ ହେବା’ ପ୍ରଭୃତି ଏ କର୍ମବାଚ୍ୟ କ୍ରିୟାର କେତୋଟି ଉଦାହରଣ । ଉ (ଗ)ରେ କର୍ତ୍ତାରେ କର୍ମରେ କର୍ମବାଚ୍ୟ -ଆ- +କୁ (ବିଭକ୍ତି ପ୍ରତ୍ୟୟ) ସହିତ ‘ହେବା’ ବା ‘ପଡ଼ିବା’ କ୍ରିୟାରେ ଆବଶ୍ୟକୀୟ କାଳ ବ୍ୟବହାର କରି ବାକ୍ୟଟି ଶେଷ ହେଉଛି । ଏପରି କ୍ରିୟାର କେତୋଟି ଉଦାହରଣ ହେଉଛି କରିବାକୁ ହେବା / ପଡ଼ିବା, ଯିବାକୁ ହେବା / ପଡ଼ିବା, ଖାଇବାକୁ ହେବା / ପଡ଼ିବା ଇତ୍ୟାଦି । ଏପରି କ୍ରିୟା ଗଠନରେ ଏକ ପ୍ରକାର ବାଧ୍ୟବାଧ୍ୟକତା ଅର୍ଥ ପ୍ରକାଶପାଏ । ଉ (ଘ)ରେ ‘ସରିବା’ କ୍ରିୟାର ୨ ପ୍ରକାର କର୍ମବାଚ୍ୟ ବ୍ୟବହାର ଦେଖିବାକୁ ମିଳିଥାଏ । (ଘ-୧)ରେ ମୂଳକ୍ରିୟାରେ କର୍ମବାଚ୍ୟର -ଆ- ପ୍ରତ୍ୟୟ ସହିତ ସରିବା କ୍ରିୟା ଯୁକ୍ତ ହୋଇଛି । କିନ୍ତୁ (ଘ-୨)ରେ ବିଶେଷ୍ୟ ପଦ ସହିତ ‘ସରିବା’ କ୍ରିୟା ଯୋଗ ହୋଇ କର୍ମବାଚ୍ୟ ହୋଇଛି । (ଘ-୧)ର କେତୋଟି ଉଦାହରଣ ସ୍ୱରୂପ ଖିଆ ସରିବା, ଲେଖା ସରିବା, ପଢ଼ା ସରିବା ଓ (ଘ-୨)ର ଉଦାହରଣ ଭିତରୁ ଟଙ୍କା ସରିବା, ଧନ ସରିବା ପ୍ରଭୃତିକୁ ନିଆଯାଇପାରେ । ଉ(ଙ)ରେ ‘ଲାଗିବା’ କ୍ରିୟା ବ୍ୟବହାରରେ ମଧ୍ୟ କର୍ମବାଚ୍ୟ ହୁଏ । ‘ଲାଗିବା’ ପରି ଆଉ ଗୋଟିଏ କ୍ରିୟା ‘ମିଳିବା’ ବ୍ୟବହାର କରି ମଧ୍ୟ କର୍ମବାଚ୍ୟର ବାକ୍ୟ ଗଠିତ ହୁଏ । ଉ ଚ)ରେ ‘ଜାଣିବା’ କ୍ରିୟାର ୩ ପ୍ରକାର କର୍ମବାଚ୍ୟ ବ୍ୟବହାର ରହିଛି । ଜଣାଅଛି, ଜଣାନାହିଁ, ଜଣାପଡ଼ିଲାଣି, ଜଣାହେଲାଣି, ଜଣାଯାଉଛି/ଜଣାହେଉଛି କ୍ରିୟା ବ୍ୟବହାର ଗୁଡ଼ିକ କର୍ମବାଚ୍ୟର ନିୟମ ଅନୁସାରେ ଗଠିତ ।

କର୍ମବାଚ୍ୟ (ଖ), (ଗ), (ଘ), (ଙ) ଓ (ଚ)କୁ ‘ସାଦୃଶ୍ୟକର୍ମବାଚ୍ୟ’ କହିବାର ପ୍ରଧାନ ଉଦ୍ଦେଶ୍ୟ ହେଉଛି ଏ ବିଭାଗରେ ବ୍ୟବହୃତ କ୍ରିୟାଗୁଡ଼ିକ କର୍ତ୍ତୃବାଚ୍ୟରେ ମଧ୍ୟ ବ୍ୟବହାର ହୋଇପାରେ । ଯେପରି—

କର୍ତ୍ତୃବାଚ୍ୟ—ହେବା—
ମୁଁ ବଡ ହେଲି ।
ସେ ଯାତ୍ରାରେ ରଜା ହୁଅନ୍ତି ।
ସରିବା—ମୁଁ କାମ କରି କରି ସରିଗଲିଣି ।
ସେ ତ କଥା କହିବାରେ ସରିଛନ୍ତି ।
(ସଚରାଚର ବ୍ୟବହାର ହୁଏନା)
ଲାଗିବା—ତୁ କାହିଁକି ସବୁଥିରେ ଲାଗୁଛୁ ?
ସେ ମୋ ସାଙ୍ଗରେ ସବୁବେଳେ ଲାଗୁଛନ୍ତି ।

ଜାଣିବା—ମୁଁ ସବୁ ବିଷୟ ଜାଣେ ।
ପଢ଼ିବା--ସେ ଗଛରୁ ଖସି ପଡ଼ିଛନ୍ତି ।

ଓଡ଼ିଆରେ କ୍ରିୟାଗୁଡ଼ିକର ଆଲୋଚନା ଓ ବିଭାଗୀକରଣ ହେଲେ ଆହୁରି କେତେକ କ୍ରିୟା ଯେ ଉଭୟ ବାଚ୍ୟରେ ବ୍ୟବହାର ହୋଇ ପାରିବ ତାହା ଜଣାପଡ଼ନ୍ତା ।

କର୍ତ୍ତୃବାଚ୍ୟରେ କର୍ତ୍ତା ଯେପରି ସ୍ପଷ୍ଟ ଓ ପ୍ରତ୍ୟକ୍ଷ କର୍ମବାଚ୍ୟରେ ସେପରି ନୁହେଁ । ତେଣୁ କର୍ମବାଚ୍ୟରେ ଭାବ ପ୍ରକାଶ କଲାବେଳେ କର୍ତ୍ତାକୁ କ୍ରିୟା ବ୍ୟବହାର ଦ୍ୱାରା ଗୌଣ ଅପ୍ରତ୍ୟକ୍ଷ କରିଦିଆଯାଏ । ଦୈନନ୍ଦିନ ଭାଷା ବ୍ୟବହାରରେ କଥା କହିଲାବେଳେ କର୍ତ୍ତୃବାଚ୍ୟ ବା କର୍ମବାଚ୍ୟ କେଉଁ ବାଚ୍ୟରେ ଭାବ ପ୍ରକାଶ ପାଉଛି ଏ ବିଷୟରେ କେହି କେବେହେଲେ ମୁଣ୍ଡ ଘାଞ୍ଚେ ନାହିଁ । କର୍ତ୍ତୃବାଚ୍ୟ ଓ କର୍ମବାଚ୍ୟର ବାକ୍ୟ ଉଭୟ ସ୍ୱାଭାବିକ ଭାବରେ ବକ୍ତାର ଭାବ ପ୍ରକାଶ ପାଇଁ ଓ କାର୍ଯ୍ୟ ସମ୍ପାଦନ ପାଇଁ ବ୍ୟବହୃତ ହୋଇଥାଏ । ଏଥିପାଇଁ କର୍ମବାଚ୍ୟରୁ କର୍ତ୍ତୃବାଚ୍ୟକୁ ବା ଓଲଟା ଯିବାକୁ ପଡ଼େନି । ପୁଣି କର୍ତ୍ତୃବାଚ୍ୟର ସବୁ ବାକ୍ୟ କର୍ମବାଚ୍ୟକୁ ବା କର୍ମବାଚ୍ୟର ସବୁ ବାକ୍ୟ କର୍ତ୍ତୃବାଚ୍ୟକୁ ପରିବର୍ତ୍ତନ ହେବା ସମ୍ଭବ ନୁହେଁ । ଏଥିରୁ ଏତିକି ବୁଝି ହୁଏ ଯେ ଓଡ଼ିଆରେ ଦୁଇଟି ଅଲଗା ବାଚ୍ୟରେ ଭାବ ପ୍ରକାଶ କରି-ପାରିବାର ବ୍ୟବସ୍ଥା ଥିଲାବେଳେ ସର୍ବଦା ସବୁ ବାକ୍ୟକୁ ଜୋରକରି ବାଚ୍ୟ ପରିବର୍ତ୍ତନ କରି ଭାଷାର ଅସ୍ୱାଭାବିକ ଅର୍ଥ ପରିବର୍ତ୍ତନ କରିବା ନିଷ୍ପ୍ରୟୋଜନ । କାରଣ କର୍ତ୍ତୃବାଚ୍ୟର ବାକ୍ୟକୁ କର୍ମବାଚ୍ୟରେ ବା ଓଲଟା ପ୍ରକାଶ କଲେ ଅର୍ଥ ପରିବର୍ତ୍ତନ ଘଟି ଭାବର ସ୍ୱାଭାବିକ ପ୍ରକାଶ ବାଧାପ୍ରାପ୍ତ ହୁଏ । ଯେପରି—

ମୁଁ ଏ କାମ କରିପାରେ । (କର୍ତ୍ତୃବାଚ୍ୟ)
ମୋ ଦ୍ୱାରା ଏ କାମ କରାଯାଇପାରେ । (କର୍ମବାଚ୍ୟ)

ଏ ଦୁଇଟି ବାକ୍ୟରେ ବାଚ୍ୟ ପରିବର୍ତ୍ତନ ଦ୍ୱାରା କେବଳ ଯେ ବାକ୍ୟ ଗଠନରେ ପରିବର୍ତ୍ତନ ହେଉଛି ତା ନୁହେଁ, ଅର୍ଥ-ସଂଘର୍ଷ ମଧ୍ୟ ସୃଷ୍ଟି ହେଉଛି । କାରଣ 'ମୁଁ କରିପାରେ'– ମୋର କରିବାର ଇଚ୍ଛା ଓ ଯୋଗ୍ୟତା ବା କ୍ଷମତା ପ୍ରକାଶ କଲାବେଳେ, 'ମୋ ଦ୍ୱାରା କରାଯାଇପାରେ' ମୋ ଉପରେ ଅନ୍ୟର ପ୍ରଭାବ ଓ ମୋର ଅକ୍ଷମତା ବା ଅଯୋଗ୍ୟତା ପ୍ରକାଶ

କରୁଛି । ଏ ବିଷୟରେ ଅଧିକରୁ ଅଧିକ ବୈଜ୍ଞାନିକ ଗବେଷଣା ହେବା ଆବଶ୍ୟକ । ଏ ପ୍ରକାର ଆଲୋଚନା ଭାଷା ବିଜ୍ଞାନର ଅର୍ଥବିଜ୍ଞାନ ପରିସର ଅନ୍ତର୍ଭୁକ୍ତ ।

'ସର୍ବସାର ବ୍ୟାକରଣ'ର ବାଚ୍ୟ ପରିବର୍ତ୍ତନ ଅଂଶଟିର ସମ୍ପୂର୍ଣ୍ଣ ପୁନର୍ବିଚାର ହେବା ଉଚିତ ବୋଲି ମନେହୁଏ । ଭାବବାଚ୍ୟ ବିଭାଗରେ ବ୍ୟାକରଣ ବହିରେ ଯେଉଁ ବାକ୍ୟସବୁ ଉଦାହରଣ ସ୍ୱରୂପ ଦିଆଯାଇଛି ସେଥିରେ ଭାବ ସଙ୍କୁଚିତ ହେବା ସଙ୍ଗେ ସଙ୍ଗେ ବାକ୍ୟ ଗଠନ ନିୟମ ମଧ୍ୟ ନିର୍ଦ୍ଦିଷ୍ଟ ହୋଇ ନ ଥିବା ଦେଖାଯାଉଛି ('ସର୍ବସାର ବ୍ୟାକରଣ'ର ଭାବବାଚ୍ୟ ଓ ବାଚ୍ୟ ପରିବର୍ତ୍ତନରେ ଥିବା ଉଦାହରଣ ଗୁଡ଼ିକ ଦ୍ରଷ୍ଟବ୍ୟ । ବାକ୍ୟଗୁଡ଼ିକର ବାଚ୍ୟ ପରିବର୍ତ୍ତନ ପାଇଁ କର୍ତ୍ତୃବାଚ୍ୟ, କର୍ମବାଚ୍ୟ ଓ ସାଦୃଶ୍ୟ କର୍ମବାଚ୍ୟର ବାକ୍ୟଗୁଡ଼ିକ ନିଜ ନିଜ ନିୟମ ପରିସର ଭିତରେ ପ୍ରକାଶିତ ହେଲେ ଏପରି ଭାବ ସଙ୍କୁଚନ ହେବ ନାହିଁ । ବାଚ୍ୟ ପରିବର୍ତ୍ତନ ପାଇଁ କର୍ତ୍ତୃବାଚ୍ୟର ବାକ୍ୟକୁ ମଞ୍ଜ (Kernel) ବାକ୍ୟ ଭାବରେ ନେଇ ପରିବର୍ତ୍ତନ କରିବାକୁ ହୁଏ । ବାଚ୍ୟ ପରିବର୍ତ୍ତନ ପାଇଁ ମଞ୍ଜବାକ୍ୟ ଉପରେ ନିର୍ଭର କରିବାକୁ ପଡ଼ୁ ଥିବାରୁ ଓ ପରିବର୍ତ୍ତନ ସମୟରେ ବାକ୍ୟ ଗଠନ ତଥା ଭାବ ଓ ଅର୍ଥ ପରିବର୍ତ୍ତନ ହେଉଥିବାରୁ କେଉଁ ମଞ୍ଜ ବାକ୍ୟର ବାଚ୍ୟ ପରିବର୍ତ୍ତନ ହୋଇପାରିବ ତାହା ଅତି ସାବଧାନତାର ସହିତ ବିଚାର କରାଯିବା ଆବଶ୍ୟକ । ଏ ପ୍ରବନ୍ଧରେ ବାଚ୍ୟ ପରିବର୍ତ୍ତନ ବିଷୟରେ ଅଧିକ ଆଲୋଚନା କରାଯାଉ ନାହିଁ । ଏ ବିଷୟରେ ସ୍ୱତନ୍ତ୍ର ବିଶଦ ଆଲୋଚନା ହେବା ଉଚିତ ।

ପାରମ୍ପରିକ ବ୍ୟାକରଣର କର୍ମକର୍ତ୍ତୃବାଚ୍ୟରେ ଥିବା ଉଦାହରଣ ଗୁଡ଼ିକୁ ଏକ ସ୍ୱତନ୍ତ୍ର ବିଭାଗଭୁକ୍ତ ନ କରି ସେଗୁଡ଼ିକୁ କର୍ତ୍ତୃବାଚ୍ୟ ବିଭାଗଭୁକ୍ତ କରାଯାଇପାରେ । କାରଣ 'ଘଣ୍ଟା ବାଜୁଛି', 'ଫଳ ପାଚିଲା', ଭାତ ଫୁଟୁଛି' ପ୍ରଭୃତି ଉଦାହରଣ ଗୁଡ଼ିକୁ ଲକ୍ଷ୍ୟ କଲେ ଦେଖାଯାଏ ଯେ ଏପରି ବାକ୍ୟରେ ବ୍ୟବହୃତ କ୍ରିୟାଗୁଡ଼ିକର କର୍ତ୍ତା ସ୍ଥାନରେ ବ୍ୟକ୍ତି ବା ସର୍ବନାମବାଚକ ପଦ ବ୍ୟବହାର ନ ହୋଇ ଅପ୍ରାଣୀବାଚକ ଶବ୍ଦ ବ୍ୟବହାର ହୋଇ କ୍ରିୟାର ଏକ ବଚନାନ୍ତ ରୂପ ହୋଇଛି ଏବଂ କର୍ମ ଓ କ୍ରିୟା ଏକ ସମୟରେ ସଂଘଟିତ ହେଉଛି । ଏହାକୁ 'ସାଦୃଶ୍ୟ କର୍ତ୍ତୃବାଚ୍ୟ' ନାମ ଦିଆଯାଇ ପାରେ ।

ଓଡ଼ିଆରେ କର୍ମବାଚ୍ୟରେ ବ୍ୟବହୃତ ଯା — /ହେ— ଧାତୁ ଭିତରେ ହେ— ଅପେକ୍ଷା ଯା— ର ବ୍ୟବହାର ବେଶି ଏବଂ ସ୍ଥାନ ବିଶେଷରେ

ହେ— ଓ ଯା— ବ୍ୟବହାରରେ ଅର୍ଥ ପାର୍ଥକ୍ୟ ମଧ୍ୟ ଆସିଥାଏ ।
ଯେପରି—

'ତମ ସହିତ ପରେ ଦେଖା' ହେବ ଓ 'ତମ ସହିତ ପରେ ଦେଖାଯିବ' ଦୁଇଟିଯାକ ବାକ୍ୟର ଅର୍ଥ ସମାନ ନୁହଁ । ପଣ୍ଡିତ ଗୋପୀନାଥ ନନ୍ଦ ତାଙ୍କ 'ଓଡ଼ିଆ ଭଷାତତ୍ତ୍ୱ'ରେ 'ଅନ୍ୟାନ୍ୟ ନାନାବିଧ କ୍ରିୟା' ପରିଚ୍ଛେଦରେ 'ବିକାଯିବେ, ବିକାହେବେ' ବିଷୟରେ କହିବାକୁ ଯାଇ କହିଛନ୍ତି ଯେ ଏପରି ଅନେକ କର୍ମବାଚ୍ୟ କ୍ରିୟାରେ ଯା ଧାତୁ ଓ ହେ - ଧାତୁ ନିର୍ବିରୋଧରେ ଆନୁଷଙ୍ଗିକ ରହେ । ଅର୍ଥାତ୍ କ୍ଷେତ୍ର-ବିଶେଷରେ 'ଦେଖାହେବ' 'ଦେଖାଯିବ' ଉଦାହରଣ ପରି କର୍ମବାଚ୍ୟରେ ମଧ୍ୟ କେତେକ ବ୍ୟତିକ୍ରମ ପରିଲକ୍ଷିତ ହୁଏ । ଅଧିକ ଆଲୋଚନା ହେଲେ ଏହା ସ୍ପଷ୍ଟତର ହେବ । କର୍ମବାଚ୍ୟ ବାକ୍ୟ ଗଠନରେ ଯା , ହେ— , ଓ ଆସ୍— ଧାତୁ ମୂଳକ୍ରିୟା ରୂପେ ବ୍ୟବହାର ହୋଇ ପାରେନାହିଁ ଏବଂ ମୂଳକ୍ରିୟା ଗଠନରେ ଦେ— ଓ ନେ— ଯଥାକ୍ରମେ ଦିଆ— ଓ ନିଆ— ହୁଏ ।

ତମକୁ ଟଙ୍କା ଦିଆଯିବ । ଦିଆହେବ ।
ତତେ ସିନେମା ନିଆଯିବ । ନିଆହେବ ।

କର୍ତ୍ତୃବାଚ୍ୟର ବାକ୍ୟରେ କର୍ତ୍ତା ନିଜେ କାର୍ଯ୍ୟ ସମ୍ପାଦନକାରୀ ବ୍ୟକ୍ତି (actor) ହୋଇଥିବାରୁ ସେ ଆତ୍ମପ୍ରକାଶ କରିବାକୁ ବାଧ୍ୟ । କିନ୍ତୁ କର୍ମ-ବାଚ୍ୟର ବାକ୍ୟରେ କର୍ତ୍ତା ସିଧାସଳଖ କ୍ଷେତ୍ର ଉପରକୁ ଆସି କର୍ମ ସମ୍ପାଦନ କରୁ ନ ଥିବାରୁ ସେ ନିଜକୁ ଲୁଚାଇ ରଖିପାରେ । ତେଣୁ ଦେଖାଯାଏ ଯେ ଆଜି କାଲିକାର ସରକାରୀ ଭଷାରେ, ସମ୍ବାଦପତ୍ରର ଭାଷାରେ, କୋର୍ଟ କଚେରୀ ଭାଷାରେ ଯେଉଁଠି କୌଣସି ଦାୟିତ୍ୱ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତିର ବା ବ୍ୟକ୍ତି ସମୂହଙ୍କର ନୁହେଁ କିନ୍ତୁ ସେ ଦାୟିତ୍ୱ ଅନ୍ୟଠାରେ ବା ଅନ୍ୟ ସ୍ଥାନରେ ନିହିତ, ସେଠି କର୍ମବାଚ୍ୟ ବାକ୍ୟର ବହୁଳ ପ୍ରୟୋଗ ହୋଇଥାଏ । କର୍ତ୍ତୃବାଚ୍ୟର ବାକ୍ୟରେ କର୍ତ୍ତାର କାର୍ଯ୍ୟପ୍ରତି ଆନ୍ତରିକତା ଓ ସମ୍ପର୍କଭାବ ଯେତିକି ପ୍ରକାଶ ପାଏ କର୍ମବାଚ୍ୟରେ ଏ ଆନ୍ତରିକତା ଓ ସମ୍ପର୍କ ଭାବର ସେତିକି ଅଭାବ ଅନୁଭୂତ ହୁଏ ।

କେବଳ ଓଡ଼ିଆ ବ୍ୟାକରଣରେ ନୁହେଁ, ବାଚ୍ୟର ପାରମ୍ପରିକ ରୀତିରେ ଚର୍ଚ୍ଚା ଅନ୍ୟ ପୂର୍ବାଞ୍ଚଳୀୟ ସମଗୋତ୍ରୀ ଭାଷା ବଙ୍ଗଳା ଓ

ଅସମିୟାରେ ମଧ୍ୟ ଏକାପରି ହେଇଥିବା ଦେଖାଯାଏ । ବଙ୍ଗଳା ଓ ଅସମିୟା ଭାଷାରେ ଯଥାକ୍ରମେ 'ଉଚ୍ଚତର ମାଧ୍ୟମିକ ବାଂଲା ବ୍ୟାକରଣ ଓ ରଚନା' (ଲେଖକ—ଅଧ୍ୟାପକ ମନ୍ମଥ ନାଥ ରାୟ ଓ ଶ୍ରୀ ମଦନ ମୋହନ ବିଦ୍ୟାଭୂଷଣ) ଏବଂ 'ଆଦର୍ଶ ବ୍ୟାକରଣ ରଚନା ଆରୁ ଅନୁବାଦ' (ଲେଖକ—ଶ୍ରୀ ବିଶ୍ୱନାରାୟଣ ଶାସ୍ତ୍ରୀ ବ୍ୟାକରଣ ବହିରେ ନମୁନା ଭଳରେ ଏହା ଦ୍ରଷ୍ଟବ୍ୟ

ଇଂରାଜୀ ଭାଷାରେ କ୍ରିୟାର ବାଚ୍ୟ (voice)କୁ active ଓ passiv ଦୁଇଟି ଭାଗରେ ବିଭକ୍ତ କରାଯାଇଛି । active ଓ passive-ରେ ପାର୍ଥକ୍ୟ ଦର୍ଶାଇବାକୁ ଯାଇ ପାମରନ୍ଦାଙ୍କ 'ବ୍ୟାକରଣ' ବହିରେ ନିମ୍ନଲିଖିତ ଉଦାହରଣ ଦେଇଛନ୍ତି :

> John saw Bill, (active)
> Bill was seen by John. (passive)

ସେ କହନ୍ତି, "voice is concerned onl with active and passive and the most striking point is that the object of an active sentence is the subject of the passive as in the pair 'John saw Bill' and 'Bill was seen by John." ଇଂରାଜୀରେ ବାକ୍ୟର ବାଚ୍ୟ ନିର୍ଦ୍ଧାରଣ ବେଳେ ବିଭକ୍ତି ପ୍ରତ୍ୟୟାନ୍ତ କରିବାକୁ ପଡେନାହିଁ ବୋଲି 'by' ଯୋଗକରି active ଓ passive ଭିତରେ ସମ୍ପର୍କ ସ୍ଥିର କରଯାଏ । କିନ୍ତୁ ବର୍ତ୍ତମାନ ଆଧୁନିକ ଭାଷା-ବିଜ୍ଞାନର ପ୍ରସାର ଫଳରେ ଏ ସମ୍ପର୍କକୁ ଭାଷା-ବିଜ୍ଞାନ (Linguistics) ଓ ଅର୍ଥ ବିଜ୍ଞାନ (Semantics) ଦ୍ୱାରା ଚର୍ଚ୍ଚା କରାଗଲାଣି । କେତେକ ଭାଷାବିଜ୍ଞାନୀ କର୍ତ୍ତୃବାଚ୍ୟ ଓ କର୍ମ-ବାଚ୍ୟର ସମ୍ପର୍କକୁ ବ୍ୟାକରଣ ପରିସରଭୁକ୍ତ ନ କରି ଅର୍ଥବିଜ୍ଞାନର ପରିସରଭୁକ୍ତ କରୁଛନ୍ତି । ଫଳରେ ବାଚ୍ୟ ପରିବର୍ତ୍ତନ ଦ୍ୱାରା ବାକ୍ୟ ଗଠନର ପାର୍ଥକ୍ୟ ଅପେକ୍ଷା ବାକ୍ୟର ଭାବପ୍ରକାଶର ପାର୍ଥକ୍ୟକୁ ଅଧିକ ପ୍ରାଧାନ୍ୟ ଦେଇ କର୍ତ୍ତୃବାଚ୍ୟ ବାକ୍ୟ ଓ କର୍ମବାଚ୍ୟ ବାକ୍ୟର ସ୍ୱତନ୍ତ୍ର ଭାବରେ ଅର୍ଥ ସଂସାର ଦୃଷ୍ଟିରୁ ବିଶ୍ଳେଷଣ ଓ ଆଲୋଚନା କରୁଛନ୍ତି । କିନ୍ତୁ ଯେଉଁ ଭାଷା ବିଜ୍ଞାନୀମାନେ ବାକ୍ୟ ଗଠନ ପାର୍ଥକ୍ୟକୁ ନେଇ ଆଗଉଛନ୍ତି ସେମାନେ ଚମସ୍କି Transformational Generative Grammarର ନିୟମ ଅନୁସରଣ କରି ବାକ୍ୟର ବିଭିନ୍ନ ଅଂଶର ସ୍ଥାନ

ପରିବର୍ତ୍ତନକୁ ପ୍ରାଧାନ୍ୟ ଦେଇ ନୂଆ ମାର୍ଗ ଖୋଜୁଛନ୍ତି । ଓଡ଼ିଆରେ ଆଧୁନିକ ବୈଜ୍ଞାନିକ ଦୃଷ୍ଟିକୋଣରୁ ଭାଷା ଆଲୋଚନା ଆରମ୍ଭ ହେବା-ପାଇଁ ଆହୁରି ସମୟ ଆସିବାକୁ ଡେରି ନାହିଁ ।

ଇଂରାଜୀରେ ତ ବାଚ୍ୟକୁ ନେଇ ବହୁ ବିଭିନ୍ନ ସମ୍ଭବ ଓ ସମ୍ଭାବିତ ଆଲୋଚନା କରଗଲଣି । ପୁଣି ଇଂରାଜୀ ଭାଷାରେ ପୃଥିବୀର ବହୁ ଭାଷାର ଯେପରି—ଚୀନ୍ ଭାଷା, ଜାପାନୀ ଭାଷା, ଆର୍ମେନିଆ ଭାଷା ଓ ଆହୁରି ଯେତେ ଭାଷାର 'ବାଚ୍ୟ' ବିଷୟରେ ନାନାପ୍ରକାରର ଉଲ୍ଲେଖନୀୟ ଆଲୋଚନା ପ୍ରକାଶ ପାଇଲଣି, ତାହା ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ଓଡ଼ିଆ 'ବାଚ୍ୟ'ର ମଧ୍ୟ ବୈଜ୍ଞାନିକ ଦୃଷ୍ଟିକୋଣରୁ ଭାଷାଭିତ୍ତିକ ଆଲୋଚନା ହେବା ପାଇଁ ପ୍ରସ୍ତୁତ ହେବା ଆବଶ୍ୟକ ।

## ସହାୟକ ଗ୍ରନ୍ଥସୂଚୀ

ପଣ୍ଡିତ ନାରାୟଣ ମହାପାତ୍ର ଅଧ୍ୟାପକ ଶ୍ରୀଧର ଦାସ;
'ସର୍ବସାର ବ୍ୟାକରଣ' ୧୯୪୩

ଗୋପୀନାଥ ନନ୍ଦ, 'ଓଡ଼ିଆ ଭାଷାତତ୍ତ୍ୱ' ୧୯୬୭

ଡଃ ଦେବୀପ୍ରସନ୍ନ ପଟ୍ଟନାୟକ, ଶ୍ରୀ ଗଗନେନ୍ଦ୍ର ନାଥ ଦାସ,
Conversational Oriya, ୧୯୭୨

ଶ୍ରୀ ଗୋପାଳ ଚନ୍ଦ୍ର ପ୍ରହରାଜ, 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ'

ଅଧ୍ୟାପକ ମନ୍ମଥ ନାଥ ରାୟ, ଶ୍ରୀ ମଦନମୋହନ ବିଦ୍ୟାଭୂଷଣ,
'ଉଚ୍ଚତର ମାଧ୍ୟମିକ ବାଂଲା ବ୍ୟାକରଣ ଓ ରଚନା' ୧୯୬୭

ଶ୍ରୀ ବିଶ୍ୱନାରାୟଣ ଶାସ୍ତ୍ରୀ, 'ଆଦର୍ଶ ବ୍ୟାକରଣ ରଚନାରୁ ଅନୁବାଦ' ୧୯୭୦

Frank R. Palmer, 'grammar'; 1971

Frank R. Palmer, The English Verb, 1974

Frank R. Palmer, Modality and the English Modals, 1979

Otto Jespersen, A Modern English Grammar, 1961

Dorothy Siegel, 'Nonsources of Unpassives', from Syntax and Semantics, Vol. 2 Ed. by John P. Kimball, 1973

Irwin Howard and Agnes M.Niyekana Howard, 'Passivization' from Syntax and Semantics, Vol. 5, Ed. by Masayoshi Shibatani, 1976

Bernard Comrie, 'Aspect and Voice, Some Reflections on perfect and passive', from Syntax and Semantics, Vol. 14, Ed. by Philip J. Tedeschi and Annie Zalnen, 1981

Helen A. Haig, 'Passivization in Modern Western Armenian' from Syntax and Semantics, Vol. 15, Ed. by Paul J. Hopper & Sandra A. Thompson, 1982.

—o—

# ଓଡ଼ିଆ ଅନୁଜ୍ଞା ରୂପର ଆଲୋଚନା

ଓଡ଼ିଆ ବ୍ୟାକରଣରେ ଅନୁଜ୍ଞା ରୂପର ବିଶେଷ ଆଲୋଚନା ହୋଇ ନଥିବା ଦେଖାଯାଏ । ବିଭିନ୍ନ ପ୍ରକାର କ୍ରିୟାର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ କାଳ ପରି ଅନୁଜ୍ଞା ରୂପର ବର୍ଣ୍ଣନା ହେବାର ଆବଶ୍ୟକ । କିନ୍ତୁ ଓଡ଼ିଆ ଭାଷାରେ କ୍ରିୟା ଓ କ୍ରିୟାରେ କାଳର ବ୍ୟବହାର ବର୍ଣ୍ଣନା ଯେପରି ଅସଂପୂର୍ଣ୍ଣ, ଅନୁଜ୍ଞା ରୂପର ବର୍ଣ୍ଣନା ମଧ୍ୟ ସେହିପରି ତ୍ରୁଟିପୂର୍ଣ୍ଣ । ଓଡ଼ିଆ ବ୍ୟାକରଣକାରମାନେ ଅନୁଜ୍ଞା ରୂପର ଉଦ୍ଦେଶ୍ୟ ନ ବୁଝି ଗୋଟିଏ ଦୁଇଟି ବାକ୍ୟରେ ବୁଝାଇ ଦେଇଛନ୍ତି । ଏହି ପ୍ରବନ୍ଧରେ ଅନୁଜ୍ଞା ରୂପରେ କାଳର ବର୍ଣ୍ଣନା ଓ ଏହାର ବିଶେଷତ୍ୱ ସମ୍ବନ୍ଧରେ ଆଲୋଚନା କରାଯାଇଛି ।

ଓଡ଼ିଆ ମାଧ୍ୟମିକ ଶିକ୍ଷାବୋର୍ଡ ଦ୍ୱାରା ପ୍ରକାଶିତ 'ମାଧ୍ୟମିକ ଓଡ଼ିଆ ବ୍ୟାକରଣ'ରେ ଓଡ଼ିଆ କ୍ରିୟାର ଦୁଇଟି 'ଭାବ' (mood) ଥିବାର ଦର୍ଶା-ଯାଇଛି—(୧) ଆଭିପ୍ରାୟିକ, (୨) ଅନୁଜ୍ଞା । କିନ୍ତୁ ଏଇ 'ଭାବ' ମନର କେଉଁ ଭାବକୁ ନିର୍ଦ୍ଦେଶ କରେ ସେ ବିଷୟରେ କିଛି ସୂଚନା ନାହିଁ । ମନର ତ ଆନନ୍ଦ, କ୍ରୋଧ, ହିଂସା, ବିରାଗ ପରି ବହୁ ପ୍ରକାର ଭାବ ରହିଛି । ଅନୁଜ୍ଞା ଦ୍ୱାରା କିନ୍ତୁ ଏଇ ଭାବଗୁଡ଼ିକ ପ୍ରକାଶ ପାଏ ନାହିଁ । ବରଂ ଏହାର ଉଦ୍ଦେଶ୍ୟ ଭିନ୍ନ ।

ଓଡ଼ିଆ 'ସର୍ବସାର ବ୍ୟାକରଣ'ର ଲେଖକ ପଣ୍ଡିତ ନାରାୟଣ ମହାପାତ୍ର ଓ ଶ୍ରୀ ଶ୍ରୀଧର ଦାସ ସଂସ୍କୃତ ବ୍ୟାକରଣକୁ ଅନୁସରଣ କରି 'ଅନୁଜ୍ଞା' ବିଷୟରେ ଲେଖିଛନ୍ତି ଯେ—

"ଆଦେଶ ବା ଅନୁଜ୍ଞା କେବଳ ୨ୟ ବା ୩ୟ ପୁରୁଷ ପ୍ରତି ପ୍ରୟୋଗ କରାଯାଇ ପାରେ । ଆଦେଶ ଦେବା ସ୍ଥଳରେ ଅତୀତ କାଳର କ୍ରିୟା ବ୍ୟବହାର କରାଯାଇ ନ ପାରେ । ତେଣୁ ଅନୁଜ୍ଞା ସୂଚକ କ୍ରିୟାର କାଳ କେବଳ ବର୍ତ୍ତମାନ ଓ ଭବିଷ୍ୟତ ହୋଇପାରେ । ଯଥା—

ସେ ଘରକୁ ଯାଉ । (ବର୍ତ୍ତମାନ)

ତୁମେ ଶୋଇପଡ଼ । (ବର୍ତ୍ତମାନ)

ତୁମେମାନେ ପ୍ରତ୍ୟହ ପଢ଼ା କରି ଆସିବ ।
(ଭବିଷ୍ୟତ)

ତୁମେ ସନ୍ଧ୍ୟାବେଳେ ଖେଳିବାକୁ ଯିବ । (ଭବିଷ୍ୟତ)''

ଏଠାରେ 'ସର୍ବସାର ବ୍ୟାକରଣ' ବିଷୟରେ କହିବାର ଉଦ୍ଦେଶ୍ୟ ହେଉଛି ଯେ କେବଳ ଏଇ ବହିରେ ଅନୁଜ୍ଞା ବିଷୟରେ ତ୍ରୁଟିପୂର୍ଣ୍ଣ ହେଲେ ମଧ୍ୟ ଟିକିଏ ବେଶି ଲେଖା ଯାଇଛି । ଅନ୍ୟ ସବୁ ବ୍ୟାକରଣ ବହି ପ୍ରାୟ ଏହି ବହିକୁ ଅନୁସରଣ ବା ଅନୁକରଣ କରିଛନ୍ତି । ଉପରୋକ୍ତ ଉଦ୍ଧୃତାଂଶରେ ଅନୁଜ୍ଞା ବିଷୟରେ ମାତ୍ର ୩ଟି ବାକ୍ୟ କୁହାଯାଇଛି ଓ ୩ଟି ଯାକ ବାକ୍ୟର 'କହିବାର କଥା' ଭୁଲ । ୧ମ ବାକ୍ୟ 'ଆଦେଶ ବା ଅନୁଜ୍ଞା କେବଳ ୨ୟ ବା ୩ୟ ପୁରୁଷ ପ୍ରତି ପ୍ରୟୋଗ କରଯାଇ ପାରେ' ଏକଥା ଠିକ୍ ନୁହଁ । ଏହା ୧ମ ପୁରୁଷ ପ୍ରତି ମଧ୍ୟ ବ୍ୟବହାର କରି-ହେବ । ୨ୟ ବାକ୍ୟ 'ଆଦେଶ ଦେବା ସ୍ଥଳରେ ଅତୀତକାଳର କ୍ରିୟା ବ୍ୟବହାର କରଯାଇ ନ ପାରେ'; ଏକଥା ବି ଠିକ୍ ନୁହେଁ । କାରଣ ଅନୁଜ୍ଞାରେ ଅତୀତକାଳର କ୍ରିୟା ବ୍ୟବହାର ହୋଇପାରେ । ୩ୟ ବାକ୍ୟ 'ତେଣୁ ଅନୁଜ୍ଞା ସୂଚକ କ୍ରିୟାର କାଳ କେବଳ ବର୍ତ୍ତମାନ ଓ ଭବିଷ୍ୟତ ହୋଇପାରେ' ଏ ବି ଭୁଲ । ପୁଣି ଯେଉଁ ଉଦାହରଣ ଗୁଡ଼ିକୁ ଉଲ୍ଲେଖ କରଯାଇଛି ସେ ଗୁଡ଼ିକ ମଧ୍ୟରେ ସମୟ ଓ କାଳର (time and tense) ପାର୍ଥକ୍ୟକୁ ବାଦ ଦିଆଯାଇଛି । ଏ ବିଷୟରେ ଟିକିଏ ପରେ ଆଲୋଚନା କରଯାଉଛି । ଯେଉଁ ୩ଟି ବାକ୍ୟ ଲେଖା ଯାଇଛି ସେ ଗୁଡ଼ିକ ପୁଣି ନିଶ୍ଚିତ ଭବରେ ସଠିକ କିଛି ପ୍ରକାଶ କରୁ ନାହାନ୍ତି ବରଂ ସେ ଗୁଡ଼ିକ ଅନିଶ୍ଚିତ ବା ଆନୁମାନିକ ଭାବ ପ୍ରକାଶ କରୁଛନ୍ତି । ସେ ଗୁଡ଼ିକ ପଛରେ ଯଥେଷ୍ଟ ଯୁକ୍ତି ନାହିଁ ।

ବର୍ତ୍ତମାନ ପ୍ରଶ୍ନ ଉଠେ 'ଅନୁଜ୍ଞା' କ'ଣ ? ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ'ରେ 'ଅନୁଜ୍ଞା' ଶବ୍ଦର ୬ ପ୍ରକାର ଅର୍ଥ ଦିଆଯାଇଛି ।

୧--ଆଜ୍ଞା (Command, order, injunction,

୨—ସମ୍ମତି ପ୍ରଦାନ (Giving of consent)

୩– ଅନୁମତି (permission)

୪—ସ୍ୱୀକାର (Agreement)

୫ ମଞ୍ଜୁରି (Approval)

୬—(ବ୍ୟାକରଣ) ଅନ୍ୟକୁ ଆଦେଶ ଦେବା ବା ଅନୁରୋଧ କରିବା ଅର୍ଥକ କାଳ ବା କ୍ରିୟାର ରୂପ ।

ଶେଷୋକ୍ତ ଅର୍ଥ ଅନୁସାରେ ଅନୁଜ୍ଞା ହେଉଛି ଆଦେଶ ବା ଅନୁରୋଧ ଅର୍ଥକ ପ୍ରୟୋଗ । ଏହା ଏକ କାଳ ନୁହେଁ, ଏହି କ୍ରିୟାରେ କାଳର ପ୍ରୟୋଗ କରଯାଏ । କିନ୍ତୁ 'ଅନୁଜ୍ଞା' କେବଳ ଆଦେଶ ବା ଅନୁରୋଧ ନୁହେଁ । ଏହା ଆଜ୍ଞା, ସମ୍ମତି, ଅନୁମତି, ପ୍ରାର୍ଥନା, ଭିକ୍ଷା, ସଦିଚ୍ଛା ଓ ଆଶୀର୍ବାଦ, ଅଭିଶାପ ଓ ତିରସ୍କାର ଅର୍ଥରେ ମଧ୍ୟ ବ୍ୟବହୃତ ହୋଇପାରେ । ନିମ୍ନ ଉଦାହରଣଗୁଡ଼ିକୁ ଲକ୍ଷ୍ୟ କରଯାଇ ପାରେ :—

୧ । ଆପଣଙ୍କ ଆଜ୍ଞା ହେଉ ଆମେ ଏଠାରୁ ଫେରିଯାଉ (ଆଜ୍ଞାର୍ଥକ)

୨ । ହଁ ତୁମେ ଯାଇପାର । (ସମ୍ମତି ଅର୍ଥକ)

୩ । ମତେ ଯିବାକୁ ଅନୁମତି ମିଳୁ । (ଅନୁମତି ଅର୍ଥକ)

୪ । ହେ ପ୍ରଭୁ, ଆମ ପ୍ରତି ସଦୟ ହୁଅ । (ପ୍ରାର୍ଥନାର୍ଥକ)

୫ । ମୁଠିଏ ଖାଇବାକୁ ମିଳୁ ।
ବାବୁ, ଦି'ଟା ପଇସା ଦିଅ । (ଭିକ୍ଷାର୍ଥକ)

୬ । ସେ ଦିର୍ଘଜୀବୀ ହେଉ । (ଆଶୀର୍ବାଦ ଓ ସଦିଚ୍ଛା ଅର୍ଥକ)
ତୁମର ସବୁ ମଙ୍ଗଳ ହେଉ !

୭ । ତୁ ଭସ୍ମ ହୋଇ ଯା !
ତୁମର ବଂଶ ନଷ୍ଟ ହେଉ ! (ଅଭିଶାପ ଅର୍ଥରେ)

୮ । ତୁ ଚୁଲୀକି ଯା !
ତା ବୁଦ୍ଧି ପୋଡ଼ିଯାଉ । (ତିରସ୍କାର ଅର୍ଥରେ)

୯ । ତୁମେ ଅତିଶୀଘ୍ର ଏ ସ୍ଥାନ ଛାଡ଼ ଚାଲିଯାଅ ।
(ଆଦେଶ ଅର୍ଥରେ)

୧୦ । ଚଟେ ଗିଲାସେ ପାଣି ଦେଲ ! (ଅନୁରୋଧ ଅର୍ଥରେ)

ଅନୁଜ୍ଞାର ସ୍ୱତନ୍ତ୍ର କ୍ରିୟା ରୂପ ନାହିଁ । କ୍ରିୟାପଦର ବିଭିନ୍ନ ଗଠନକୁ ପୁନଃ ପ୍ରୟୋଗ କରି ପୁରୁଷ ଓ ବଚନକୁ ଅନୁସରଣ କରି କାଳର ପ୍ରୟୋଗ ଓ ଅନୁଦାନ ଦ୍ୱାରା ଅନୁଜ୍ଞା ପ୍ରକାଶ କରାଯାଇଥାଏ । ଓଡ଼ିଆ ବ୍ୟାକରଣ ବଚ୍ଛିମାନଙ୍କରେ ସମୟ ଓ କାଳର ବ୍ୟବହାରକୁ ସ୍ୱତନ୍ତ୍ର ଆଲୋଚନା ଦ୍ୱାରା ଦେଖାଇ ଦିଆଯାଇ ନ ଥିବାରୁ ସବୁ ସମୟରେ କାଳର ପ୍ରୟୋଗକୁ ନିର୍ଭୁଲ ପ୍ରୟୋଗ ବୋଲି ମନେ କରାଯାଏ । ଉଦାହରଣ ସ୍ୱରୂପ ଏହି ଅନୁଜ୍ଞା ପ୍ରୟୋଗ ଆଲୋଚନାରେ ମଧ୍ୟ ତାହା ଦେଖାଇ ଦେଇ ହେବ ।

ଯେପରି :—୧ । ତୁମେ ବହିଟି ତାଙ୍କୁ ଦିଅ । (ବର୍ତ୍ତମାନ ସମୟ)

୨ । ସୁବିଧା କରି ବହିଟି ତାଙ୍କୁ ଦିଅ ।

(ଭବିଷ୍ୟତ ସମୟ)

ଉପର ଉଦାହରଣରେ ଦୁଇଟିଯାକ ବାକ୍ୟର କ୍ରିୟାର କାଳର ବ୍ୟବହାର ବର୍ତ୍ତମାନ କାଳ ବା ସାମାନ୍ୟ ବର୍ତ୍ତମାନ । କିନ୍ତୁ ୧ମ ବାକ୍ୟରେ ତାହା ଉପସ୍ଥିତ ବର୍ତ୍ତମାନକୁ ବୁଝାଇଲାବେଳେ ୨ୟ ବାକ୍ୟରେ ଭବିଷ୍ୟତର ଯେ କୌଣସି ସମୟକୁ ଏହା ସୂଚିତ କରୁଛି । ଏଥିରୁ ଏଇ କଥା ସ୍ପଷ୍ଟ ହୁଏ ଯେ ନିର୍ଦ୍ଦିଷ୍ଟ କାଳର ପ୍ରୟୋଗ ଦ୍ୱାରା ନିର୍ଦ୍ଦିଷ୍ଟ ସମୟକୁ ସର୍ବଦା ସୂଚାଇ ହୁଏ ନାହିଁ । କିନ୍ତୁ ସମୟର ନିର୍ଦ୍ଦିଷ୍ଟତା ପାଇଁ କ୍ରିୟାରେ କାଳର ପ୍ରୟୋଗ ସହିତ ଘଟଣାର ବା କାର୍ଯ୍ୟର ପରିବେଶ, ପରିସ୍ଥିତି ଓ ଅବସ୍ଥାକୁ ବିଚାରକୁ ନେବାକୁ ହୁଏ । ୨ୟ ବାକ୍ୟରେ 'ସୁବିଧା କରି' ଶବ୍ଦର ଯୋଗ ଦ୍ୱାରା ଘଟଣାର ସମୟ ପରିବର୍ତ୍ତନ ହୋଇ ଯାଉଛି । ସେହିପରି ଅନ୍ୟ କୌଣସି ଶବ୍ଦ ଯୋଗ କରି ଏ ବାକ୍ୟର ସୂଚିତ ସମୟକୁ ମଧ୍ୟ ବଦଳାଇ ଦିଆଯାଇ ପାରେ । ଏପରିକି ପ୍ରଥମ ବାକ୍ୟରେ କୌଣସି ଶବ୍ଦ ଯୋଗ ନ କଲେ ମଧ୍ୟ ଭିନ୍ନ ଭିନ୍ନ ପରିସ୍ଥିତିରେ ଏହା ବର୍ତ୍ତମାନ ଓ ଭବିଷ୍ୟତ ସମୟକୁ ସୂଚାଇ ପାରେ । ମନେ ରଖିବାକୁ ହେବ ଯେ ବାକ୍ୟରେ ନୂଆ ଶବ୍ଦ ଯୋଗ କରିବା ଦ୍ୱାରା ବାକ୍ୟର କ୍ରିୟାରେ କାଳର ପରିବର୍ତ୍ତନ ହେଉ ନାହିଁ ଅଥଚ ସମୟର ପରିବର୍ତ୍ତନ ହେଉଛି ଏବଂ ନୂଆ ଶବ୍ଦ ଯୋଗ ନ ହେଲେ ମଧ୍ୟ ପରିସ୍ଥିତି ଅନୁସାରେ ସମୟର ପରିବର୍ତ୍ତନ ହୋଇ ଯାଉଛି ।

ପ୍ରଶ୍ନବାଚକ ବାକ୍ୟ ପରି ଅନୁଜ୍ଞାବାଚକ ବାକ୍ୟରେ ଅନୁତାନର (intonation) ବିଶେଷ ବ୍ୟବହାର ଓ ଗୁରୁତ୍ୱ ରହିଛି । ଅନୁତାନର ପ୍ରକାଶଭଙ୍ଗୀ ଓ ତାରତମ୍ୟ ଉପରେ କଥିତ ବାକ୍ୟର ଉଦ୍ଦେଶ୍ୟ ନିର୍ଭର କରେ । ତେଣୁ ଅନୁତାନର ବ୍ୟବହାର ଅନୁସାରେ ସେହି ଏକା ବାକ୍ୟ କେତେବେଳେ ପ୍ରଶ୍ନବାଚକ ତ କେତେବେଳେ ଏକ ଉକ୍ତି (statement), କେତେବେଳେ ଆଶ୍ଚର୍ଯ୍ୟ ସୂଚକ ତ କେତେବେଳେ ଅନୁଜ୍ଞା ପ୍ରକାଶ କରେ । କହିବା ବେଳେ ଏହାକୁ ସ୍ପଷ୍ଟ ଭାବରେ ବୁଝିହେବ କିନ୍ତୁ ଲେଖାରେ କେବଳ ଚିହ୍ନଦ୍ୱାରା ଏହାକୁ ସୂଚାଇ ଦେବା ସମ୍ଭବ । ଉଦାହରଣ ସ୍ୱରୂପ ନିମ୍ନଲିଖିତ ବାକ୍ୟ ୪ଟିକୁ ଲକ୍ଷ୍ୟ କରାଯାଇ ପାରେ ।

(୧) ତୁମେ ପ୍ରତିଦିନ ବଜାରକୁ ଯାଅ ? (ପ୍ରଶ୍ନ)

(୨) ତୁମେ ପ୍ରତିଦିନ ମନ୍ଦିରକୁ ଯାଅ । (ଉକ୍ତି)

(୩) ତୁମେ ପ୍ରତିଦିନ ମନ୍ଦିରକୁ ଯାଅ ! (ଆଶ୍ଚର୍ଯ୍ୟ)

(୪) ତୁମେ ପ୍ରତିଦିନ ମନ୍ଦିରକୁ ଯାଅ ⁝ (ଅନୁଜ୍ଞା)

(ଉକ୍ତି ଓ ଅନୁଜ୍ଞା ମଧ୍ୟରେ ପାର୍ଥକ୍ୟ ସୂଚାଇବାକୁ ଅନୁଜ୍ଞା ଚିହ୍ନ ପାଇଁ ପୂର୍ଣ୍ଣଚ୍ଛେଦ ଉପରେ ବିନ୍ଦୁ ଦିଆଯାଇଛି ।)

ଏହି ୪ଟି ବାକ୍ୟରେ ପ୍ରଶ୍ନବାଚକର ଅନୁତାନ ଉକ୍ତିର ଅନୁତାନଠାରୁ ପୃଥକ ଏବଂ ଅନୁଜ୍ଞାର ଅନୁତାନ ପ୍ରଶ୍ନ, ଉକ୍ତି ଓ ଆଶ୍ଚର୍ଯ୍ୟବୋଧକ ବାକ୍ୟର ଅନୁତାନ ଠାରୁ ସ୍ୱତନ୍ତ୍ର । ଅନୁଜ୍ଞା-ଅର୍ଥକ ବିଭିନ୍ନ ବ୍ୟବହାରରେ ପୁଣି ଅନୁତାନର ତାରତମ୍ୟ ରହିଛି । ଏଥିପାଇଁ ପୂର୍ବରୁ ଦିଆଯାଇଥିବା ବିଭିନ୍ନ ଅନୁଜ୍ଞା-ଅର୍ଥକ ବାକ୍ୟ ଗୁଡ଼ିକରେ ଅନୁତାନର ତାରତମ୍ୟକୁ ଲକ୍ଷ୍ୟ କରାଯାଇ ପାରେ ।

ଅନୁଜ୍ଞା ବ୍ୟବହାର ଦ୍ୱାରା ବାକ୍ୟର ବାହ୍ୟିକ ଗଠନରେ (structure) କୌଣସି ପରିବର୍ତ୍ତନ ହୁଏ ନାହିଁ । ଏହି ରୂପର କୌଣସି ନିର୍ଦ୍ଦିଷ୍ଟ କାଳସୂଚକ ଚିହ୍ନ ନାହିଁ । କିନ୍ତୁ ଅନୁତାନର ସଂଯୋଗ କରି କ୍ରିୟାରେ କାଳ, ପୁରୁଷ ଓ ବଚନ ପ୍ରୟୋଗ ଦ୍ୱାରା ଅନୁଜ୍ଞାର ରୂପ ପ୍ରକାଶ ପାଏ । ଏହି ରୂପରେ ବାକ୍ୟର ଗଠନରେ ପରିବର୍ତ୍ତନ ନ ଆସିଲେ ମଧ୍ୟ ଅର୍ଥଗତ ପାର୍ଥକ୍ୟ ରହିଥାଏ । ଏ ବିଷୟରେ ପୂର୍ବରୁ ସୂଚନା ଦିଆ-ଯାଇଛି । ପୁଣି ଅନୁତାନର ପ୍ରୟୋଗରେ ବାକ୍ୟର ଅର୍ଥ ପରିବର୍ତ୍ତନ

ହେବା ସଙ୍ଗେ ସଙ୍ଗେ ଅନୁଷ୍ଠାନର ତାରତମ୍ୟରେ ଯେଉ ଏକା ଅନୁଜ୍ଞା ବାକ୍ୟରେ ମଧ୍ୟ ବାକ୍ୟର ଉଦ୍ଦେଶ୍ୟ ଓ ନିର୍ଦ୍ଦେଶ ମଧ୍ୟରେ ପାର୍ଥକ୍ୟ ସୂଚିତ ହେଉଛି । ଏହି ଅନୁଷ୍ଠାନର ପାର୍ଥକ୍ୟ ଓ ତାରତମ୍ୟ ସୂଚାଇବାକୁ ମଧ୍ୟ କୌଣସି ନିର୍ଦ୍ଦିଷ୍ଟ ଚିହ୍ନ ଦିଆଯାଇ ହୋଇ ନାହିଁ । କେବଳ ବାକ୍ୟର କାର୍ଯ୍ୟକାରୀ ଉଦ୍ଦେଶ୍ୟରୁ ଏହା ଅନୁଜ୍ଞା ବୋଲି ବୁଝିବାକୁ ହୁଏ ।

ପୁନଶ୍ଚ ଅନୁଜ୍ଞା-ବାକ୍ୟରେ କର୍ମର ବ୍ୟବହାରରେ ଅର୍ଥଗତ ପାର୍ଥକ୍ୟ ସୃଷ୍ଟି ହୋଇଥାଏ । ନିମ୍ନଲିଖିତ ବାକ୍ୟ ଦୁଇଟିକୁ ଲକ୍ଷ୍ୟ କରଯାଇ ପାରେ—

୧—ତୁ ଭାତ ଖା ।

୨—ତୁ (ମୋ) ମୁଣ୍ଡ ଖା ।

ଉପରୋକ୍ତ ବାକ୍ୟ ଦୁଇଟିରେ ଗଠନଗତ ପାର୍ଥକ୍ୟ ନ ଥିଲେ ମଧ୍ୟ ଅର୍ଥଗତ ପାର୍ଥକ୍ୟ ସ୍ପଷ୍ଟ । ଏହି ପାର୍ଥକ୍ୟ ବାକ୍ୟରେ ଅନୁଜ୍ଞା ରୂପ ଦ୍ୱାରା ହେଉ ନାହିଁ, ଏହା ବାକ୍ୟରେ ବ୍ୟବହୃତ କର୍ମ 'ଭାତ' ଓ '(ମୋ) ମୁଣ୍ଡ' ଦ୍ୱାରା ହେଉଛି, 'ତୁ ଭାତ ଖା' ଏକ ସାଧାରଣ ନିର୍ଦ୍ଦେଶକୁ ବୁଝାଉ ଥିବା ବେଳେ 'ତୁ ମୋ ମୁଣ୍ଡ ଖା'ର ଶପଥ ଓ ତିରସ୍କାର ଦୁଇ ପ୍ରକାର ଅର୍ଥ ବୁଝାଯାଉଛି । ଏଠାରେ ମଧ୍ୟ ଅନୁଷ୍ଠାନର ତାରତମ୍ୟକୁ ବିଚାରକୁ ନେବାକୁ ହେବ । ଅନୁଜ୍ଞାରେ ଅର୍ଥଗତ ପାର୍ଥକ୍ୟର ହିଁ ପ୍ରାଧାନ୍ୟ ବେଶି ।

ପୁରୁଷ ଓ ବଚନ ଭେଦରେ ଅନୁଜ୍ଞା ରୂପର ବ୍ୟବହାରରେ ପରିବର୍ତ୍ତନ ହୋଇଥାଏ । ଏହା ୧ମ, ୨ୟ ଓ ୩ୟ ପୁରୁଷ ପ୍ରତି ଏକବଚନ ଓ ବହୁବଚନରେ ପ୍ରୟୋଗ କରଯାଇ ପାରିବ । କିନ୍ତୁ ଅନୁଜ୍ଞା-ଅର୍ଥକ ବ୍ୟବହାର ପାଇଁ ବାଦୀ ପ୍ରତିବାଦୀ ପରି ପକ୍ଷ ଓ ପ୍ରତିପକ୍ଷ ରହିବାକୁ ବାଧ୍ୟ । ପ୍ରତିପକ୍ଷ ହୁଏତ କାଳ୍ପନିକ ବା ଆତ୍ମପ୍ରତିକାଂକ୍ଷ ହୋଇପାରେ । ଏପରି ସ୍ଥଳରେ ଜଣେ ଆଜ୍ଞା-ପ୍ରଦାନକାରୀ ଓ ଅନ୍ୟ ଜଣକ ଆଜ୍ଞା-ପାଳନକାରୀ । ଏ ବିଷୟରେ ଆଉ ଟିକିଏ ବୁଝାଇ କହିଲେ ଭଲ ହେବ । ଉଦାହରଣ ସ୍ୱରୂପ ୧ମ ପୁରୁଷ, ଏକ ବଚନରେ ଅନୁଜ୍ଞା ବ୍ୟବହାରରେ 'ମୁଁ ଯାଏ' କହି ହୁଏତ ଉପସ୍ଥିତ ବା ଅନୁପସ୍ଥିତ ଅନ୍ୟମାନଙ୍କ ଠାରୁ

ବିଦାୟ-ଅନୁମତି ନିଆଯାଇ ପାରେ ବା ନିଜକୁ ନିଜେ ମଧ୍ୟ ଏ କଥା କୁହାଯାଇ ପାରେ । ୧ମ ପୁରୁଷ, ଏକ ବଚନରେ ଅନୁଜ୍ଞା 'ମୁଁ ଯାଏ'ର ପରିବର୍ତ୍ତିତ ରୂପ ହେଉଛି 'ମୋତେ ଯିବାକୁ ଅନୁମତି ମିଳୁ' ବା 'ମୋତେ ଯିବାକୁ ଅନୁମତି ଦେ / ଦିଅ ଦିଅନ୍ତୁ ।' ସେହିପରି ଆଉ ଏକ ଉଦାହରଣ ହେଉଛି 'ମୁଁ ଆସୁଛି', ଯେଉଁଠାରେ ନିଜର ଯିବାପାଇଁ ଅନ୍ୟର ଅନୁମତି ଲୋଡ଼ାଯାଏ, ଏଣୁ 'ଆଦେଶ ବା ଅନୁଜ୍ଞା କେବଳ ୨ୟ ବା ୩ୟ ପୁରୁଷ ପ୍ରତି ପ୍ରୟୋଗ କରଯାଇ ପାରେ କହିବା' ଠିକ ହେବ ନାହିଁ । ପୁଣି 'ମୁଁ ଯାଏ' ଓ 'ମୁଁ ଆସୁଛି' ଏହି ଦୁଇଟି ବାକ୍ୟରେ କାଳ ଓ ସମୟର ବ୍ୟବହାରକୁ ଲକ୍ଷ୍ୟ କରଯାଇ ପାରେ । ଦୁଇଟିଯାକ ବାକ୍ୟର ସମୟ 'ଉପସ୍ଥିତ ବର୍ତ୍ତମାନ' ଓ ଉଦ୍ଦେଶ୍ୟ ଏକ ହେବା ସ୍ଥଳରେ ଗୋଟିକର କାଳ ଅନୁଜ୍ଞା-ନିତ୍ୟ ସାମାନ୍ୟ ବର୍ତ୍ତମାନ (**Imperative-habitual simple present**) ଏବଂ ଅନ୍ୟଟିର ଅନୁଜ୍ଞା-ଅସମ୍ପନ୍ନ ବର୍ତ୍ତମାନ (**Imperative—present continuous**) ।

ଅନୁଜ୍ଞାରେ ବିଭିନ୍ନ କାଳର ପ୍ରୟୋଗକୁ ଅନୁସରଣ କରି ବାକ୍ୟରେ ସୂଚିତ ସମୟକୁ ବିଚାର କରି ହେବ । ଅନୁଜ୍ଞାରେ କାଳର ପ୍ରୟୋଗରେ ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷ ଦୁଇଟି ଦିଗ ରହିଛି । ବୁଝିବାର ସୁବିଧା ପାଇଁ ଅନୁଜ୍ଞା କ୍ରିୟାରେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ କାଳକୁ ଟିକିଏ ପରେ ପୃଥକ ଭାବରେ ଆଲୋଚନା କରଯାଉଛି ।

ଅନୁଜ୍ଞାର କାଳର ଆଲୋଚନା କରିବା ପୂର୍ବରୁ ଏହାର କାଳ ପ୍ରୟୋଗରେ ଥିବା ଗୂଢ଼ାର୍ଥ (**ambiguity**) ବିଷୟରେ ଆଗରୁ ସଚେତନ ହେବା ଦରକାର । ପ୍ରଥମ ଗୂଢ଼ାର୍ଥ ହେଉଛି ଅନୁଜ୍ଞାରେ ଅନୁଷ୍ଠାନର ତାରତମ୍ୟ । ଏ ବିଷୟରେ ପୂର୍ବରୁ କୁହାଯାଇଛି । ଦ୍ୱିତୀୟ ଗୂଢ଼ାର୍ଥ ହେଉଛି ଏଥିରେ କାଳର ପ୍ରୟୋଗରେ ଦୁଇପ୍ରକାର କାଳ ପ୍ରକାଶ ପାଇବ । ଉଦାହରଣ ସ୍ୱରୂପ 'ତୁମେ ପ୍ରତିଦିନ ବହିଟି ତାଙ୍କୁ ଦିଅ'—ଏହି ବାକ୍ୟରେ 'ଦିଅ' କ୍ରିୟାର କାଳ ନିତ୍ୟ-ସାମାନ୍ୟ ବର୍ତ୍ତମାନ (**habitual simple present**) ଓ ଅନୁଜ୍ଞା-ବର୍ତ୍ତମାନ (**PresentImperative**) । ଏହି ପ୍ରକାର କାଳର ଦ୍ୱିଅର୍ଥକ ପ୍ରୟୋଗ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ, ୩ଟି ଯାକ କାଳରେ ସମ୍ଭବ । ଏହାଛଡ଼ା କାଳ ଓ ସମୟର ବିଚାର-ଭୁଲ ତ ରହିଛି ।

ଅନୁଜ୍ଞାରେ ସାମାନ୍ୟ ଅତୀତ କାଳର ପ୍ରୟୋଗ ହୋଇ ପାରେ । ଏହି କାଳର ପ୍ରୟୋଗରେ ସାଧାରଣତଃ ଅନୁରୋଧପୂର୍ଣ୍ଣ ନିର୍ଦ୍ଦେଶ ଦିଆ ଯାଇଥାଏ । କିନ୍ତୁ ସମୟରେ ଏହା କ୍ରୋଧପୂର୍ଣ୍ଣ ବା ସ୍ନେହପୂର୍ଣ୍ଣ ନିର୍ଦ୍ଦେଶ ମଧ୍ୟ ପ୍ରକାଶ କରିପାରେ । ଅତୀତକାଳର ପ୍ରୟୋଗକୁ ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷ ଦୁଇ ପ୍ରକାରରେ ବର୍ଣ୍ଣନା କରି ହେବ । ଏହାକୁ ପ୍ରତ୍ୟକ୍ଷ ପ୍ରୟୋଗ ଓ ଅପ୍ରତ୍ୟକ୍ଷ ପ୍ରୟୋଗ ବୋଲି ନାମକରଣ କରଯାଉଛି । ଉଦାହରଣ ଦ୍ୱାରା ଏ ବର୍ଣ୍ଣନା ଅଧିକ ସ୍ପଷ୍ଟ ହେବ ।

୧—ପ୍ରତ୍ୟକ୍ଷ ପ୍ରୟୋଗ :

୧ । ତୁମେ ଟିକେ ଚା ପିଇଲ ।

୨ । ତୁ ଏ ବହିଟା ନେଲୁ ।

୩ । ଆପଣ ଛବିଟା ଦେଖିଲେ ।

୪ । ଟୁଇଁ, ଗୀତଟିଏ ଗାଇଲୁ ।

୨—ଅପ୍ରତ୍ୟକ୍ଷ ପ୍ରୟୋଗ :

୧ । ତୁ ମତେ ଗିଲାସେ ପାଣି ଦେଲୁ ।

୨ । ଆପଣ ଆମକୁ କିଛି ଫୁଲ ଦେଲେ ।

୩ । ତାକୁ ଟିକେ ଡ଼ାକିଲ ।

୪ । ସେମାନଙ୍କୁ କିଛି କଥା କହିଲୁ ।

୫ । ସେମାନଙ୍କ ପାଖରୁ ଖାତାଟା ଆଣିଲେ ।

ଉପରୋକ୍ତ ଉଦାହରଣରେ ପ୍ରଥମକୁ ପ୍ରତ୍ୟକ୍ଷ ଓ ଦ୍ୱିତୀୟକୁ ଅପ୍ରତ୍ୟକ୍ଷ କହିବାର ଉଦ୍ଦେଶ୍ୟ ହେଉଛି, ପ୍ରଥମରେ ଅନୁଜ୍ଞା, ଅନୁଜ୍ଞା-ପାଳନକାରୀ ପାଇଁ ସିଧାସଳଖ ଉଦ୍ଦିଷ୍ଟ । କିନ୍ତୁ ଦ୍ୱିତୀୟରେ ଏହା ଅନୁଜ୍ଞାପାଳନକାରୀ ଦ୍ୱାରା ଅନ୍ୟ ପାଇଁ ଉଦ୍ଦିଷ୍ଟ । ଅନୁଜ୍ଞା କ୍ରିୟାରେ ସାମାନ୍ୟ ଅତୀତକାଳର ପ୍ରୟୋଗ କେବଳ ୨ୟ ପୁରୁଷ ପ୍ରତି ଏକବଚନ ଓ ବହୁବଚନରେ ହୁଏ । ୧ମ ପୁରୁଷ ବା ୩ୟ ପୁରୁଷ ପ୍ରତି ପ୍ରୟୋଗ ହୋଇ ପାରେ ନାହିଁ । ସାମାନ୍ୟ ଅତୀତକାଳର ପ୍ରୟୋଗରେ ମଧ୍ୟ ପ୍ରଶ୍ନ, ଉକ୍ତି, ଆଶ୍ଚର୍ଯ୍ୟବୋଧ ଓ ଅନୁଜ୍ଞାର ଅନୁଷ୍ଠାନର ତାରତମ୍ୟ ପ୍ରତି ଲକ୍ଷ୍ୟ ରଖିବାକୁ ହେବ ।

ଉଦାହରଣ : ୧—ଆପଣ ଚା ପିଇଲେ ?

(ପ୍ରଶ୍ନ-ଉପସ୍ଥିତ ବର୍ତ୍ତମାନ)

୨—ଆପଣ ଚା ପିଇଲେ ।

(ଉକ୍ତି-ସାମାନ୍ୟ ଅତୀତ)

୩—(ଆଶ୍ଚର୍ଯ୍ୟ) ଆପଣ ଚା ପିଇଲେ !

(ଆଶ୍ଚର୍ଯ୍ୟବୋଧକ—ଉପସ୍ଥିତ ବର୍ତ୍ତମାନ)

୪—ଆପଣ ଟିକେ ଚା ପିଇଲେ !

(ଅନୁଜ୍ଞା-ଉପସ୍ଥିତ ବର୍ତ୍ତମାନ)

କିନ୍ତୁ ଅନୁଜ୍ଞାରେ ସାମାନ୍ୟ ଅତୀତକାଳର ପ୍ରୟୋଗରେ ସମୟ କେବେହେଲେ ଅତୀତ ହୁଏ ନାହିଁ, ଏହା ସର୍ବଦା ଉପସ୍ଥିତ ବର୍ତ୍ତମାନ । ଅବଶ୍ୟ ସ୍ଥଳ ବିଶେଷରେ ଏହା ଭବିଷ୍ୟତ ସମୟକୁ ବୁଝାଇପାରେ । ଯେପରି-'ଆପଣ ପ୍ରତିଦିନ କପେ ଲେଖା ଚା ପିଇଲେ ।' ପୁଣି ଅତୀତ-କାଳର ପ୍ରୟୋଗରେ ଅନୁଜ୍ଞାରେ ଆଦେଶ ଅପେକ୍ଷା ଅନୁରୋଧ ଓ ଆନ୍ତରିକତାର ସ୍ୱର ଅଧିକ ।

ବର୍ତ୍ତମାନ-ଅନୁଜ୍ଞାରେ ବର୍ତ୍ତମାନ କାଳର ପ୍ରୟୋଗ ୧ମ, ୨ୟ ଓ ୩ୟ ପୁରୁଷ ପ୍ରତି ଏକବଚନ ଓ ବହୁବଚନରେ ହୁଏ । ଏଥିପାଇଁ ଅନୁଜ୍ଞା-ନିତ୍ୟ ସାମାନ୍ୟ ବର୍ତ୍ତମାନ ଓ ଅନୁଜ୍ଞା-ଅସମ୍ପନ୍ନ ବର୍ତ୍ତମାନର କାଳ ବ୍ୟବହାର କରଯାଏ । ଅନୁଜ୍ଞା ନିତ୍ୟ ସାମାନ୍ୟ ବର୍ତ୍ତମାନକାଳର ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷ ପ୍ରୟୋଗ ରହିଛି । ନିମ୍ନଲିଖିତ ଉଦାହରଣରୁ ତାହା ବୁଝି-ହେବ ।

୧—ପ୍ରତ୍ୟକ୍ଷ ପ୍ରୟୋଗ : 'ଦେଖିବା' କ୍ରିୟାର

୧ । ମୁଁ ଆଜି ଦେଖେ ।

୨ । ଆମେ ଆଜି ଦେଖୁ କ'ଣ ହେଉଛି ।

୩ । ତୁ ଛବି ଦେଖ ।

୪ । ତୁମେ ଏ ବହିଟି ଦେଖ ।

୫ । ଆପଣ ନନ୍ଦନକାନନ ଦେଖନ୍ତୁ ।

୬ । ସେ ଏ ଫଟଟା ଦେଖୁ ।
୭ । ସେ ଘରଟି ଦେଖନ୍ତୁ ।

୨—ଅପ୍ରତ୍ୟକ୍ଷ ପ୍ରୟୋଗ : 'ଦେଖିବା' କ୍ରିୟାର

(କ) ୧ । ମତେ ଛବି ଦେଖାଅ ।
୨ । ତାଙ୍କୁ ବହିଟି ଦେଖା ।
୩ । ଆପଣ ସେମାନଙ୍କୁ ଘର ଦେଖାନ୍ତୁ ।
୪ । ସେ ବହିଟି ଦେଖାଉ ।
୫ । ସେମାନେ ଆପଣଙ୍କୁ କଲେଜ ଦେଖାନ୍ତୁ ।

(ଖ) ୧ । ମତେ ଦେଖିବାକୁ ଦିଅ ।
୨ । ତାଙ୍କୁ ବହିଟି ଦେଖିବାକୁ ଦେ ।
୩ । ତାକୁ କଲମଟି ଦେଖିବାକୁ ଦିଅନ୍ତୁ ।
୪ । ତାଙ୍କୁ ଛବିଟି ଦେଖିବାକୁ ଦେଉ ।
୫ । ସେମାନେ ଫଟଟି ଦେଖିବାକୁ ଦିଅନ୍ତୁ ।

ଉପର ଉଦାହରଣମାନଙ୍କରେ ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷ ପ୍ରୟୋଗର ପାର୍ଥକ୍ୟ ସ୍ପଷ୍ଟ । ଅପ୍ରତ୍ୟକ୍ଷ ପ୍ରୟୋଗର 'କ' ଓ 'ଖ' ଦୁଇଟି ବିଭାଗ କରଯାଇଛି । ପ୍ରତ୍ୟକ୍ଷ ପ୍ରୟୋଗରେ ଅନୁଜ୍ଞାର ଅର୍ଥ ଏଠାରେ ଅନୁମତି ବା ଆଦେଶ ଏବଂ ଆଦେଶକାରୀ ଓ ଆଦେଶ-ପାଳନକାରୀର ସମ୍ପର୍କ ମଧ୍ୟ ସିଧାସଳଖ । ଅପ୍ରତ୍ୟକ୍ଷ ପ୍ରୟୋଗରେ ଅନୁଜ୍ଞାର ବ୍ୟବହାର ପ୍ରେରଣାର୍ଥକ କ୍ରିୟାର ପ୍ରୟୋଗ ପରି ଜଣାଯାଉ ଥିଲେ ମଧ୍ୟ ଏହା ପ୍ରେରଣାର୍ଥକ ନୁହେଁ, ବରଂ ଆଦେଶାର୍ଥକ । ଅପ୍ରତ୍ୟକ୍ଷ ପ୍ରୟୋଗରେ (କ) ଓ (ଖ) ଦୁଇଟି ବିଭାଗ କରିବାର କାରଣ ହେଉଛି, 'ଦେବା', 'ନେବା', 'ହେବା', 'ଯିବା', 'ରହିବା' ପ୍ରଭୃତି ପରି କେତେକ କ୍ରିୟାରେ ଅପ୍ରତ୍ୟକ୍ଷ ଅନୁଜ୍ଞା ପାଇଁ ଅନ୍ୟ ଏକ କ୍ରିୟାର ବ୍ୟବହାର କରଯାଉଛି । ଯେପରି ପ୍ରତ୍ୟକ୍ଷରେ 'ତୁ ଯା' ଓ ଅପ୍ରତ୍ୟକ୍ଷ (ଖ)ରେ 'ତାକୁ ଯିବାକୁ ଦେ' ଅନୁମତି ଅର୍ଥରେ ସମ୍ଭବ । କିନ୍ତୁ ଅପ୍ରତ୍ୟକ୍ଷ (କ)ରେ 'ଯିବା' କ୍ରିୟାରେ ଏହା ସମ୍ଭବ ନୁହେଁ ।

ଅନୁଜ୍ଞା=ଅସମ୍ପନ୍ନ ବର୍ତ୍ତମାନକାଳର ବ୍ୟବହାର କେବଳ ୧ମ ପୁରୁଷ ଏକ ବଚନ ଓ ବହୁ ବଚନରେ ହୋଇପାରେ ଏବଂ ଏଥିରେ କେବଳ ଉପସ୍ଥିତ ବ୍ୟକ୍ତିର ଅନୁମତି ନିଆଯାଏ । ୨ୟ ଓ ୩ୟ ପୁରୁଷରେ ଏହା ପ୍ରୟୋଗ କରି ହୁଏ ନାହିଁ । ଉଦାହରଣ ସ୍ୱରୂପ—

ମୁଁ ଆସୁଛି । (ଅନୁମତି)
ଆମେ ଆସୁଛୁ । (ଅନୁମତି)

ସମ୍ମତି, ଅନୁମତି, ଆଦେଶ ପ୍ରଭୃତି ପୂର୍ବରୁ କୁହାଯାଇଥିବା ସବୁ-ପ୍ରକାର ଅନୁଜ୍ଞା ଅର୍ଥରେ ବର୍ତ୍ତମାନ—ଅନୁଜ୍ଞା କାଳର ବ୍ୟବହାର ହୋଇପାରିବ ।

ଭବିଷ୍ୟତ-ଅନୁଜ୍ଞାରେ ଭବିଷ୍ୟତ କାଳର ପ୍ରୟୋଗ ହେଲେ ତାହା ସାଧାରଣ ଭବିଷ୍ୟତର ବ୍ୟବହାର ପରି ସାଧାରଣତଃ ମନେହୁଏ । କିନ୍ତୁ ଟିକିଏ ତଳେଇ କରି ଦେଖିଲେ ସାଧାରଣ ଭବିଷ୍ୟତ ବ୍ୟବହାର ପରି ମନେ ହେଉଥିବା ବାକ୍ୟ ଅନୁଜ୍ଞାର୍ଥକ ବୋଲି ଜାଣିହେବ । 'ସର୍ବସାର ବ୍ୟାକରଣ' ବହିରେ ଦିଆଯାଇଥିବା ଭବିଷ୍ୟତ କାଳର ଅନୁଜ୍ଞାର୍ଥକ ଉଦାହରଣ ଦୁଇଟିକୁ ଆଲୋଚନା କରାଯାଇପାରେ ।

୧—ତୁମେମାନେ ପ୍ରତ୍ୟହ ପଢ଼ା କରି ଆସିବ ।

୨—ତୁମେମାନେ ସନ୍ଧ୍ୟାବେଳେ ଖେଳିବାକୁ ଯିବ ।

ଏ ଦୁଇଟି ବାକ୍ୟରେ ସାମାନ୍ୟ ଭବିଷ୍ୟତ ବ୍ୟବହାର ହୋଇଛି ଏବଂ ୧ମ ବାକ୍ୟରେ ଏହା ଅନୁଜ୍ଞା-ନିତ୍ୟ ସାମାନ୍ୟ ଭବିଷ୍ୟତ ବେଳେ ୨ୟ ବାକ୍ୟରେ ଏହା ନିର୍ଦ୍ଦିଷ୍ଟ ସନ୍ଧ୍ୟା ସମୟକୁ (ଅଥଚ ସବୁଦିନର) ସୂଚାଉଅଛି । କିନ୍ତୁ ଅନ୍ୟ କାଳମାନଙ୍କର ବ୍ୟବହାରରେ ମଧ୍ୟ ଭବିଷ୍ୟତ ସମୟକୁ ସୁଚାଇ ହେବ । ଉଦାହରଣ ସ୍ୱରୂପ—

୧—ତୁମେ ସବୁବେଳେ ମନ ଦେଇ ପାଠ ପଢ଼ ।

୨—ତୁ ଏ କାମ ସର୍ବଦା କର (ତୋର ମଙ୍ଗଳ ହେବ) ।

ଏ ଦୁଇଟି ବାକ୍ୟର କ୍ରିୟାର କାଳ ଅନୁଜ୍ଞା-ସାମାନ୍ୟ ବର୍ତ୍ତମାନ ହେଲେ ହେଁ ସମୟ ଭବିଷ୍ୟତକୁ ନିର୍ଦ୍ଦେଶ କରୁଛି । ଭବିଷ୍ୟତ-ଅନୁଜ୍ଞାରେ

ସାଧାରଣତଃ ନିର୍ଦ୍ଦେଶ, ଆଦେଶ ବା ଅନୁରୋଧ ଅର୍ଥ ପ୍ରକାଶ ପାଏ । କିନ୍ତୁ ଆଶୀର୍ବାଦ, ଅଭିଶାପ, ଭିକ୍ଷା ଓ ପ୍ରାର୍ଥନା ପ୍ରଭୃତି ଅର୍ଥରେ ଅନୁଜ୍ଞା-ବର୍ତ୍ତମାନ ଓ ଅନୁଜ୍ଞା ଭବିଷ୍ୟତ କାଳର ବ୍ୟବହାର କରଗଲେ ମଧ୍ୟ ଅନେକ ସମୟରେ ଏହା ଭବିଷ୍ୟତ ବା ଚିରକାଳକୁ ନିର୍ଦ୍ଦେଶ କରିଥାଏ । ଭବିଷ୍ୟତ-ଅନୁଜ୍ଞାରେ ଅନଜ୍ଞା-ନିତ୍ୟ ସାମାନ୍ୟ ଭବିଷ୍ୟତ ପରି ଅନୁଜ୍ଞା-ସମ୍ପନ୍ନ ଭବିଷ୍ୟତ ଓ ଅନୁଜ୍ଞା-ଅସମ୍ପନ୍ନ ଭବିଷ୍ୟତର ପ୍ରୟୋଗ ହୋଇ-ପାରିବ ।

ଉଦାହରଣ ୧—ଅନୁଜ୍ଞା-ସମ୍ପନ୍ନ ଭବିଷ୍ୟତ :

୧—ତୁମେ ଏ କାମ କରିଥିବ । (ନିର୍ଦ୍ଦେଶ)

୨—ତୁ କାଲି କାମକୁ ଯାଇଥିବୁ ।

୩—ଆପଣ ସେଠାକୁ ଯାଇଥିବେ ।
ନିର୍ଦ୍ଦେଶ ବା ଅନୁରୋଧ)

୨—ଅନୁଜ୍ଞା-ଅସମ୍ପନ୍ନ ଭବିଷ୍ୟତ

୧—ତୁମେ ଏ ବହି ପଢୁଥିବ । (ନିର୍ଦ୍ଦେଶ)

୨—ଆପଣ ତାଙ୍କ ଅଫିସକୁ ଯାଉଥିବେ ।
(ନିର୍ଦ୍ଦେଶ ବା ଅନୁରୋଧ)

୩—ତୁ ପାଠ ପଢୁଥିବୁ ।

ଅନୁଜ୍ଞା-ସମ୍ପନ୍ନ ଭବିଷ୍ୟତ ଓ ଅନୁଜ୍ଞା-ଅସମ୍ପନ୍ନ ଭବିଷ୍ୟତ କେବଳ ୨ୟ ପୁରୁଷ ଏକ ବଚନ ଓ ବହୁ ବଚନ ପ୍ରତି ପ୍ରୟୋଗ କରଯାଇ ପାରୁଛି ଏବଂ ଏହାଦ୍ୱାରା ବର୍ତ୍ତମାନ ସମୟ, ଉପସ୍ଥିତ-ବର୍ତ୍ତମାନ ସମୟ, ଭବିଷ୍ୟତ ସମୟ ଓ ଚିରନ୍ତନ ସମୟକୁ ସୂଚାଇ ଦେଇ ହେଉଛି । କିନ୍ତୁ ଭବିଷ୍ୟତ-ଅନୁଜ୍ଞା ଅତୀତ ସମୟକୁ କେବେ ହେଲେ ବୁଝାଏ ନାହିଁ ।

ଅନୁଜ୍ଞାରେ ସମ୍ଭାବନା କାଳର ପ୍ରୟୋଗ କରି ହେବ ନାହିଁ । କିନ୍ତୁ ଅନୁଜ୍ଞାରେ କାଳର ପ୍ରୟୋଗ କରି ନାସ୍ତିବାଚକ କ୍ରିୟା 'ନାହିଁ' ବ୍ୟବହାର କରି ହେବ । ନାସ୍ତିବାଚକ 'ନାହିଁ' କ୍ରିୟାର ବର୍ତ୍ତମାନ ଓ ଭବିଷ୍ୟତ ୨ଟି କାଳରେ ପ୍ରୟୋଗ ସମ୍ଭବ ।

ଉଦାହରଣ —

୧ । ତୁମେ ସେଠାକୁ ଯାଅ ନାହିଁ ।

(ଆଦେଶ ଅର୍ଥରେ)

୨ । ଆପଣ ଆଜି କଟକ ଯିବେ ନାହିଁ ।

କିନ୍ତୁ ଅନୁମତି ନ ଦେବା ବା ଅସମ୍ମତି ଅର୍ଥରେ ଅନୁଜ୍ଞା-ବାକ୍ୟକୁ ନାସ୍ତିବାଚକ କରିବାକୁ ନାସ୍ତିବାଚକ 'ନ'ର ବ୍ୟବହାର ଅନୁଜ୍ଞାର ପୂର୍ବରୁ କରିବାକୁ ହୁଏ ।

ଉଦାହରଣ—୧ । ମୁଁ ସେଠାକୁ ଆଉ କେବେ ନ ଯାଏ ।

୨ । ତୁ ଏ କାମ ନ କର ।

୩ । ତୁମେ ଆଉ ଆମ ଘରକୁ ନ ଆସ ।

୪ । ଆପଣମାନେ ଆଜି କୁଆଡ଼େ ନ ଯାଆନ୍ତୁ ।

ଅନୁଜ୍ଞାରେ ନାସ୍ତିବାଚକ ବ୍ୟବହାରରେ ମଧ୍ୟ ପ୍ରତ୍ୟକ୍ଷ ଅପ୍ରତ୍ୟକ୍ଷ ପ୍ରୟୋଗ କରଯାଇ ପାରେ । ଯେପରି :

୧ । ମୁଁ ସେଠାକୁ ନ ଯାଏ । (ପ୍ରତ୍ୟକ୍ଷ)

୨ । ମୋତେ ସେଠାକୁ ଯିବାକୁ ନ ହେଉ / ନ ପଡୁ ।

(ଅପ୍ରତ୍ୟକ୍ଷ)

୧ । ତୁ ଏ ନ କାମ କର । (ପ୍ରତ୍ୟକ୍ଷ)

୨ । ତୋତେ ଏ କାମ କରିବାକୁ ନ ପଡୁ । ( ଅପ୍ରତ୍ୟକ୍ଷ)

ଅନୁଜ୍ଞାରେ ନାସ୍ତିବାଚକ କ୍ରିୟା 'ନାହିଁ'ର ଆଉ ଏକ ପ୍ରକାର ବ୍ୟବହାର ଅଛି । ନିମ୍ନ ଉଦାହରଣଗୁଡ଼ିକୁ ଲକ୍ଷ୍ୟ କରଯାଇ ପାରେ—

୧ । ତୁମେ ମୋ ସହିତ ଆସ ।

୨ । ତୁମେ ମୋ ସହିତ ଆସୁନ ।

୧ । ତୁ ଏ କାମ କର ।

୨ । ତୁ ଏ କାମ କରୁନୁ ।

୧ । ଆପଣ ଆମ ସାଙ୍ଗରେ ଆସନ୍ତୁ ।

୨ । ଆପଣ ଆମ ସାଙ୍ଗରେ ଆସୁ ନାହାନ୍ତି ।

ଉପର ବାକ୍ୟଗୁଡ଼ିକରେ 'ନାହିଁ' ବା ନାହିଁର ଅନ୍ୟ ଏକ କଥିତ ବ୍ୟବହାରିକ ରୂପ 'ନ' ବ୍ୟବହାର ହୋଇ ବାକ୍ୟଗୁଡ଼ିକ ଅନୁରୋଧ ଅର୍ଥକ

ଅନୁଜ୍ଞାରେ ପରିଣତ ହୋଇଛି । 'ଆସ' ଓ ଆସୁନ' କହିବା ବେଳେ ସ୍ୱରର ତାରତମ୍ୟକୁ ଲକ୍ଷ୍ୟ କରଯାଇ ପାରେ । 'ଆସୁନ'ର ସ୍ୱର ସାଧାରଣତଃ ଅନୁରୋଧପୂର୍ଣ୍ଣ । ଏହା ବେଳେ ବେଳେ କ୍ରୋଧପୂର୍ଣ୍ଣ-ଆଦେଶ ଅର୍ଥରେ ମଧ୍ୟ ବ୍ୟବହୃତ ହୋଇଥାଏ ।

ଅନୁଜ୍ଞାରେ କାଳର ବ୍ୟବହାର ବିଷୟରେ ଗୋଟିଏ ମଜାକଥା ହେଉଛି ଯେ ଏ ପ୍ରକାର ବାକ୍ୟରେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ୩ଟି ଯାକ କାଳର ବ୍ୟବହାର ପରିସ୍ଥିତି ଅନୁସାରେ କେବଳ ଉପସ୍ଥିତ ବର୍ତ୍ତମାନକୁ ବୁଝାଇ କେବଳ ଅନୁରୋଧ ପ୍ରକାଶ କରିପାରେ ।

ଉଦାହରଣ : ୧ । ପୂଜା ପାଇଁ ଦି'ଟା ଫୁଲ ଦେଲ ।
(ଅତୀତ-ଅନୁଜ୍ଞା)

୨ । ପୂଜା ପାଇଁ ଦି'ଟା ଫୁଲ ଦିଅ ।
(ବର୍ତ୍ତମାନ-ଅନୁଜ୍ଞା)

୩ । ପୂଜା ପାଇଁ ଦି'ଟା ଫୁଲ ଦେବ ।
(ଭବିଷ୍ୟତ-ଅନୁଜ୍ଞା)

ଅନୁଜ୍ଞାର ବ୍ୟବହାରରେ ୧ମ ପୁରୁଷ ଏକବଚନ ଓ ବହୁବଚନରେ ଯଥାକ୍ରମେ—'ଏ' ଓ '— ଉ' ପ୍ରତ୍ୟୟ ହୁଏ । ୨ୟ ପୁରୁଷ ୩ ଭାଗରେ ବିଭକ୍ତ : — ତୁ, ତୁମେ ଓ ଆପଣ । ୨ୟ ପୁରୁଷ 'ତୁ'ର ବହୁବଚନ ଓ 'ତୁମେ'ର ଏକବଚନ ଓ ବହୁବଚନରେ '—ଅ' ପ୍ରତ୍ୟୟ ହେଉଥିବା ବେଳେ ୨ୟ ପୁରୁଷ 'ଆପଣ' ଓ ୩ୟ ପୁରୁଷ ସଜୀବ (animate) ଓ କେତେକ ନିର୍ଜୀବ (inanimate) ପଦାର୍ଥର ବହୁ ବଚନରେ '—ଅନ୍ତୁ' ପ୍ରତ୍ୟୟ କରଯାଏ । ୨ୟ ପୁରୁଷ ତୁ'ରେ ଅନୁଜ୍ଞାର ପ୍ରୟୋଗରେ କ୍ରିୟା-ପଦର ମୂଳଧାତୁ ରୂପେ ବ୍ୟବହାର ହୁଏ । ୩ୟ ପୁରୁଷ ଏକ ବଚନର ଓ ନିର୍ଜୀବ ପଦାର୍ଥର ଏକ ବଚନ ଓ ବହୁ ବଚନରେ '—ଉ' ପ୍ରତ୍ୟୟ ହୁଏ । କିନ୍ତୁ ନିର୍ଜୀବ ପଦାର୍ଥଗୁଡିକର ବେଳେ ବେଳେ ସଜୀବର ସମ୍ପର୍କରେ ଆସିବା ଦ୍ୱାରା ବହୁ ବଚନରେ '—ଅନ୍ତୁ' ପ୍ରତ୍ୟୟ ହୋଇପାରେ ।

'ଟିକେ', 'ଦୟାକରି', 'ଅନୁଗ୍ରହପୂର୍ବକ' ପ୍ରଭୃତି ଶବ୍ଦଗୁଡ଼ିକର ବ୍ୟବହାର ଅନୁଜ୍ଞା ଅର୍ଥରେ ଭିନ୍ନ ଭିନ୍ନ ପ୍ରକାରରେ ହୁଏ । 'ଦୟାକରି', 'ଅନୁଗ୍ରହପୂର୍ବକ', 'ଅନୁଗ୍ରହକରି' ଇତ୍ୟାଦି ଶବ୍ଦ ପ୍ରୟୋଗରେ କଥାରେ 'ଶିଷ୍ଟାଚର', 'ଭଦ୍ରତା' ଓ ସୌଜନ୍ୟତା ଅଧିକ ପ୍ରକାଶ ପାଇ ଅନ୍ତ-

ରଙ୍ଗତାର ପ୍ରକାଶ କମ ହୁଏ । କିନ୍ତୁ 'ଟିକେ' ଶବ୍ଦର ବ୍ୟବହାରରେ ଅନ୍ତ-ରଙ୍ଗତା ଓ ଆନ୍ତରିକତା ଯେତିକି ପ୍ରକାଶ ପାଏ ଅନୁରୋଧପୂର୍ଣ୍ଣ ସୌଜନ୍ୟ ମଧ୍ୟ ସେତିକି ପ୍ରକାଶ ପାଏ । ପୁଣି କଥାରେ 'ଟିକେ' ଶବ୍ଦ ବ୍ୟବହାର ଦୃଷ୍ଟିରୁ ବହୁତ ବେଶି । ଅବଶ୍ୟ 'ଟିକେ' ଶବ୍ଦର ଅନ୍ୟ ବ୍ୟବହାରିକ ଅର୍ଥ ମଧ୍ୟ ଅଛି । ଏଠାରେ ସେ ବିଷୟ ଆଲୋଚନା କରଯାଉ ନାହିଁ । କେବଳ ଅନୁରୋଧ-ଅନୁଜ୍ଞା ଅର୍ଥରେ ଏହାର ବ୍ୟବହାର ଲକ୍ଷ୍ୟ କରଯାଇ ପାରେ ।

ଉଦାହରଣ : ୧—ଅନୁଗ୍ରହକରି ମୋ ପାଇଁ ଏ କାମଟି କରିଦେଲ ।
୨—ଦୟାକରି ତୁମେ ଏଠାକୁ ଆସ ।
୩—ଟିକେ ଦଉଡ଼ଗଲୁ, ଦୋକାନରୁ ଖଣ୍ଡେ ବରଫ ଆଣିବୁ ।
୪ ଆପଣ ଟିକେ ତାଙ୍କ କାମଟା କରି ଦିଅନ୍ତୁ ତ ।

ମଣିଷର ହସରେ ଥଟ୍ଟା, ପରିହାସ, ଶ୍ଳେଷ, ଅବଜ୍ଞା ବା ତାଚ୍ଛଲ୍ୟ ପୁଣି କେତେବେଳେ ଦୁଃଖ ବା ଆନନ୍ଦ ପ୍ରଭୃତି ବିଭିନ୍ନ ଭବ ପ୍ରକାଶ ପାଇଲା ଭଳି ଉକ୍ତି-ପ୍ରତ୍ୟୁକ୍ତିରେ ମଧ୍ୟ ଅସଂଖ୍ୟ ଭବ ପ୍ରକାଶ ପାଇଥାଏ । ପୁଣି କଥାରେ ସ୍ୱର ବା ଅନୁତାନର ତାରତମ୍ୟ ଅନୁସାରେ ସେହି କଥା କେତେବେଳେ ଗଭୀର ଅନ୍ତରଙ୍ଗତା ଓ ସ୍ନେହ ପ୍ରକାଶ କରୁଥିବା ବେଳେ କେତେବେଳେ ଅତ୍ୟନ୍ତ କଟୂକ୍ତି ଓ ତିରସ୍କାର ପ୍ରକାଶ କରେ । ସେହିପରି ଅନୁଜ୍ଞାରେ ସ୍ୱରର ଏହି ତାରତମ୍ୟକୁ ପ୍ରକାଶ୍ୟ ଭବେ ଉପଲବ୍ଧି କରିହୁଏ ବୋଲି ସେହି ଏକା ବାକ୍ୟ ଅବସ୍ଥା, ପରିସ୍ଥିତି ଓ ପରିବେଶ ଅନୁସାରେ କେତେବେଳେ ଆଦେଶରେ ପରିଣତ ହୁଏତ କେତେବେଳେ ଅନୁରୋଧ, ପୁଣି କେତେବେଳେ ଅନ୍ୟ ଭବକୁ ପ୍ରକାଶ କରେ ।

—o—

# ଓଡ଼ିଆ କ୍ରିୟାର କାଳ : ଏକ ରୂପତାତ୍ତ୍ୱିକ ଆଲୋଚନା

ଊନବିଂଶ ଶତାବ୍ଦୀରେ ସଂଶ୍ଳେଷଣ ପଦ୍ଧତିର ଅନୁସରଣରେ ଭାଷାମାନଙ୍କର ଗଠନକୁ ପର୍ଯ୍ୟାଲୋଚନା କରି ପୃଥିବୀର ଭାଷାମାନଙ୍କର ବିଭାଗୀକରଣ କରାଯାଇଥିଲା । ଏହି ପଦ୍ଧତି ଅନୁସାରେ ଯେଉଁ ଭାଷାର ମୂଳଧାତୁଗୁଡ଼ିକୁ ଶବ୍ଦ ଭାବରେ ଭାଷାରେ ବ୍ୟବହାର କରାଯାଏ ସେଗୁଡ଼ିକୁ ସ୍ୱତନ୍ତ୍ରରୂପୀ ଭାଷା (isolating language); ଯେଉଁ ଭାଷାର ଶବ୍ଦଗୁଡ଼ିକୁ ମୂଳଧାତୁରେ ଶବ୍ଦ-ପ୍ରତ୍ୟୟ ସଂଯୋଗ କରି ଗଠନ କରାଯାଏ ସେଗୁଡ଼ିକୁ ଶବ୍ଦ-ସଂଯୋଗରୂପୀ ଭାଷା (synthetic language); ଏବଂ ଯେଉଁ ଭାଷାମାନଙ୍କର ଶବ୍ଦ ଗଠନରେ ମୂଳଧାତୁରେ ପ୍ରତ୍ୟୟ ସଂଯୋଗ କଲେ ଶବ୍ଦର ଅନ୍ତର୍ନିହିତ ସ୍ୱର ଓ ବ୍ୟଞ୍ଜନ ଧ୍ୱନିଗୁଡ଼ିକ ରୂପାନ୍ତରିତ ହୁଏ ସେଗୁଡ଼ିକୁ ପ୍ରତ୍ୟୟ-ସଂଯୋଗ ରୂପୀ ଭାଷା (agglutinative language) କୁହାଯାଇଛି । ଏହି ବିଭାଗୀକରଣ ଅନୁସାରେ ପ୍ରଧାନତଃ ଚୀନିକ ଭାଷାକୁ ସ୍ୱତନ୍ତ୍ର-ରୂପୀ ଭାଷା; ଦ୍ରାବିଡ଼ି ଓ ତୁର୍କୀ ଭାଷାକୁ ଶବ୍ଦ-ସଂଯୋଗରୂପୀ ଭାଷା ଏବଂ ଇଣ୍ଡୋ-ଇଉରୋପୀୟ ଗୋଷ୍ଠୀର ଭାଷାମାନଙ୍କୁ ପ୍ରତ୍ୟୟ ସଂଯୋଗରୂପୀ ଭାଷା ଭାବରେ ଗ୍ରହଣ କରାଯାଇଛି । କିନ୍ତୁ ବାସ୍ତବରେ ଭାଷାମାନଙ୍କର ଗଠନ କୌଣସି ଏକ ନିର୍ଦ୍ଦିଷ୍ଟ ବିଭାଗର ଅନ୍ତର୍ଭୁକ୍ତ ନ ହୋଇ ସାଧାରଣତଃ ତିନୋଟି ଯାକ ବିଭାଗର ବିଭିନ୍ନ ଉପାଦାନର ମିଶ୍ରଣ ଦ୍ୱାରା ହିଁ ଗଠିତ ହୋଇଥିବା ଲକ୍ଷ୍ୟ କରାଯାଇଥାଏ ।

ଇଣ୍ଡୋ-ଇଉରୋପୀୟ ଭାଷା ପରିବାର ଅନ୍ତର୍ଗତ କଥିତ ସଂସ୍କୃତରୁ ବିକାଶ ଲାଭ କରିଥିବା ଓଡ଼ିଆ ଏକ ପ୍ରତ୍ୟୟ-ସଂଯୋଗରୂପୀ ଭାଷା । ଅର୍ଥାତ ଓଡ଼ିଆ ଭାଷାର ଶବ୍ଦ ବା ପଦଗୁଡ଼ିକ ବିଭିନ୍ନ ପ୍ରତ୍ୟୟ ଯୁକ୍ତ ହୋଇ ଗଠିତ ହୋଇଥାନ୍ତି ।

ରୂପତତ୍ତ୍ୱରେ ଭାଷାରେ ବ୍ୟବହୃତ ଶବ୍ଦ ବା ପଦମାନଙ୍କର ଗଠନ

ପଦଟି ନିର୍ଣ୍ଣୟ କରଯାଏ । ଶବ୍ଦମାନଙ୍କର ଅନ୍ୱୟ ଦ୍ୱାରା ହିଁ 'ରୂପ' ସମ୍ବନ୍ଧୀୟ ଧାରଣା ସ୍ପଷ୍ଟ ହୁଏ । ଉଦାହରଣ ସ୍ୱରୂପ ଓଡ଼ିଆରେ 'ଆଜିର', 'କଟକିଆ', 'ଦେଖିଲି' ପ୍ରଭୃତି ଶବ୍ଦଗୁଡ଼ିକ ପ୍ରତ୍ୟେକ ଗୋଟିଏ ଲେଖାଏଁ ସ୍ୱତନ୍ତ୍ର ଶବ୍ଦ ପରି ମନେ ହେଉଥିଲେ ମଧ୍ୟ ଏଗୁଡ଼ିକର ଗଠନରେ ଯଥାକ୍ରମେ ଅଛି 'ଆଜି + ର', 'କଟକ + ଇଆ' ଓ 'ଦେଖ + ଇଲ୍ + ଇ' । ଏମାନଙ୍କର ଏହି ଗଠନରେ 'ଆଜି', 'କଟକ' ଓ 'ଦେଖ୍' ପ୍ରତ୍ୟେକ ହେଉଛି ଗୋଟିଏ ଲେଖାଏଁ ନ୍ୟୂନତମ ରୂପ ଓ ପ୍ରତ୍ୟେକ ଅର୍ଥପୂର୍ଣ୍ଣ ଶବ୍ଦ । ଅର୍ଥାତ ଆଉ ଅଧିକ ଅନ୍ୱୟ ବା ବିଶ୍ଳେଷଣ ଦ୍ୱାରା ଏଗୁଡ଼ିକ ଅର୍ଥହୀନ ଧ୍ୱନି ଏକକରେ ପରିଣତ ହେବେ (ଯେପରି, ଆଜି = ଆ + ଜ୍ + ଇ, କଟକ = କ୍ + ଅ + ଟ୍ + ଅ + କ୍ + ଅ, ଦେଖ୍ = ଦ + ଏ + ଖ୍ ଇତ୍ୟାଦି ।) ଶବ୍ଦମାନଙ୍କର ଏହି ଅର୍ଥପୂର୍ଣ୍ଣ ନ୍ୟୂନତମ ରୂପ ସହିତ ଯଥାକ୍ରମେ 'ର', 'ଇଆ' ଓ 'ଇଲ୍ ଏବଂ ଇ' ପ୍ରତ୍ୟୟ ଯୁକ୍ତ ହୋଇ ନୂତନ ଶବ୍ଦ ଗଠିତ ହୋଇ ପାରିଛି ।

'ରୂପ' ମୁକ୍ତ ଓ ବଦ୍ଧ ଭେଦରେ ଦୁଇ ପ୍ରକାର । ପ୍ରତ୍ୟେକ ଅର୍ଥପୂର୍ଣ୍ଣ ନ୍ୟୂନତମ ରୂପ ହେଉଛି ମୁକ୍ତ ରୂପ ଓ ଏଗୁଡ଼ିକ ପ୍ରତ୍ୟେକ ଶବ୍ଦ । କିନ୍ତୁ ମୁକ୍ତରୂପ ସହିତ ଯେଉଁ ପ୍ରତ୍ୟୟଗୁଡ଼ିକ ଯୁକ୍ତ କରି ନୂତନ ଶବ୍ଦ ତିଆରି କରଯାଏ ସେଗୁଡ଼ିକୁ କୁହାଯାଏ ବଦ୍ଧରୂପ । ବଦ୍ଧରୂପଗୁଡ଼ିକର ହୁଏତ ଅର୍ଥ ଥାଏ, କିନ୍ତୁ ଏଗୁଡ଼ିକ ନୂତନ ଶବ୍ଦ ଗଠନରେ ସହାୟକ ହୋଇ ମୁକ୍ତରୂପ ସହିତ ଅର୍ଥପୂର୍ଣ୍ଣ ହୁଅନ୍ତି । ଏକାଧିକ ମୁକ୍ତରୂପ ଯୁକ୍ତ ହୋଇ ନୂତନ ଶବ୍ଦ ଗଠିତ ହୋଇପାରେ, କିନ୍ତୁ କେବଳ ଏକାଧିକ ବଦ୍ଧରୂପ ଯୁକ୍ତ ହୋଇ ଶବ୍ଦ ଗଠିତ ହୋଇପାରେ ନାହିଁ । ଶବ୍ଦ ଗଠନ ପାଇଁ ମୂଳଧାତୁ ସହିତ ଯେଉଁ ପ୍ରତ୍ୟୟଗୁଡ଼ିକୁ ସଂଯୁକ୍ତ କରଯାଏ ସେଗୁଡ଼ିକ ହେଉଛି ବ୍ୟୁତ୍ପନ୍ନ ପ୍ରତ୍ୟୟ । ଉଦାହରଣ ସ୍ୱରୂପ 'ଖା' ମୂଳଧାତୁ ସହିତ —ଏ, —ଇ, —ଉ ପ୍ରଭୃତି ବ୍ୟୁତ୍ପନ୍ନ ପ୍ରତ୍ୟୟ ଯୁକ୍ତ ହୋଇ ଯଥାକ୍ରମେ ହୁଏ 'ଖାଏ', 'ଖାଇ', 'ଖାଉ' ପ୍ରଭୃତି ବିଭିନ୍ନ କ୍ରିୟାପଦ ।

ଓଡ଼ିଆରେ ମୂଳ ଧାତୁ ବା ପ୍ରତ୍ୟୟଯୁକ୍ତ ମୂଳ ଧାତୁରୁ ଗଠିତ ଧାତୁମୂଳକୁ ମୂଳ କରି ବିଭିନ୍ନ କ୍ରିୟାପଦ ଗଠିତ ହୁଏ । ମୂଳଧାତୁରେ (verbroot) ପ୍ରତ୍ୟୟ ଯୁକ୍ତ କରି ବିଭିନ୍ନ କ୍ରିୟାପଦର ଧାତୁମୂଳ (verb stem) ଗଠନ କରିବାକୁ ପଡ଼େ । ଓଡ଼ିଆ ଧାତୁ ମୂଳଗୁଡ଼ିକ ଏଣୁ ସରଳ ବା ବ୍ୟୁତ୍ପନ୍ନ ହୋଇପାରେ । ମୂଳଧାତୁଗୁଡ଼ିକ ହିଁ ସରଳ

ଧାତୁମୂଳ ଓ ଏଗୁଡିକ ଏକରୂପ ବିଶିଷ୍ଟ, ଯେପରି, ଖା, ପି, ବସ୍, ଉଠ୍ ଇତ୍ୟାଦି । ଏଗୁଡିକ କର୍ତ୍ତୃବାଚ୍ୟ କ୍ରିୟା ପଦର ଧାତୁମୂଳ ଭବରେ ବ୍ୟବହୃତ । କର୍ତ୍ତୃବାଚ୍ୟର ସରଳ ଧାତୁମୂଳରେ ଆବଶ୍ୟକ ପ୍ରତ୍ୟୟ ଯୁକ୍ତ ହୋଇ କ୍ରିୟାପଦଗୁଡିକ ଗଠିତ ହୁଏ । ସରଳ ଧାତୁମୂଳରେ ବ୍ୟୁତ୍ପନ୍ନ ପ୍ରତ୍ୟୟ ଯୁକ୍ତ କରି ବ୍ୟୁତ୍ପନ୍ନ ଧାତୁମୂଳ ଗଠନ କରଯାଏ । ସରଳ ଧାତୁମୂଳ ବ୍ୟୁତ୍ପନ୍ନ ପ୍ରତ୍ୟୟ ଯୁକ୍ତ ହୋଇ ବ୍ୟୁତ୍ପନ୍ନ ଧାତୁମୂଳରେ ପରିଣତ ହେବା ସମୟରେ ସ୍ୱର-ସଂଗତି ନିୟମ ଅନୁସାରେ କେତେକ ମୂଳଧାତୁରେ ଧ୍ୱନିଗତ ପରିବର୍ତ୍ତନ ସଙ୍ଘଟିତ ହୁଏ । ସ୍ୱରାନ୍ତ ବା ଉପାନ୍ତ୍ୟ ବ୍ୟଞ୍ଜନାନ୍ତ ମୂଳଧାତୁରେ ଏହି ପରିବର୍ତ୍ତନ ପରିଲକ୍ଷିତ ହୋଇଥାଏ । ପ୍ରୟୋଜକ ଓ କର୍ମବାଚ୍ୟ ବ୍ୟୁତ୍ପନ୍ନ ଧାତୁମୂଳ ନିମନ୍ତେ ସରଳ ଧାତୁମୂଳରେ ବ୍ୟୁତ୍ପନ୍ନ -—ଆ ପ୍ରତ୍ୟୟ ଯୁକ୍ତ ହେଲେ କେତେକ ସ୍ୱରାନ୍ତ ଓ ଉପାନ୍ତ୍ୟ ବ୍ୟଞ୍ଜନାନ୍ତ ମୂଳଧାତୁରେ ଧ୍ୱନିଗତ ପରିବର୍ତ୍ତନ ଘଟିଥାଏ । ଉଦାହରଣ ସ୍ୱରୂପ :

(୧) ସ୍ୱରାନ୍ତ ମୂଳଧାତୁ—

ଶୋ—ଶୋ + — ଆ = ଶୁଆ (ଓ + ଆ > ଉ)

ଧୋ—ଧୋ + —ଆ = ଧୁଆ ( ,, )

ନେ—ନେ + —ଆ = ନିଆ (ଏ + ଆ > ଇ)

ଦେ ଦେ + —ଆ = ଦିଆ ( ,, )

(୨) ଉପାନ୍ତ୍ୟ ବ୍ୟଞ୍ଜନାନ୍ତ ମୂଳଧାତ —

ଆଣ — ଆଣ୍ + — ଆ = ଅଣା (ଉପାନ୍ତ୍ୟ—ଆ > ଉପାନ୍ତ୍ୟ-ଅ)

ଜାଣ୍ — ଜାଣ୍ + —ଆ = ଜଣା( ,, )

କର୍ମବାଚ୍ୟ ଧାତୁମୂଳ ଗଠନ ନିମନ୍ତେ ସରଳ ଧାତୁମୂଳରେ ବା ମୂଳଧାତୁରେ କର୍ମବାଚ୍ୟ—ଆ ପ୍ରତ୍ୟୟ ପରେ ସହଯୋଗୀ ଯା / ହେ । ଧାତୁ ଯୁକ୍ତ କରି କ୍ରିୟାପଦ ଗଠନ ପାଇଁ ଆବଶ୍ୟକ ଅନ୍ୟ ପ୍ରତ୍ୟୟଗୁଡିକୁ ଯୁକ୍ତ କରିବାକୁ ପଡେ ।

ବାକ୍ୟର ଦୁଇ ପ୍ରଧାନ ଭଗ କର୍ତ୍ତା ଭଗ ଓ କ୍ରିୟାଭଗ ମଧ୍ୟରେ କ୍ରିୟାଭଗ ଅଧିକ ଗୁରୁତ୍ୱପୂର୍ଣ୍ଣ । କାରଣ କେବଳ ଗୋଟିଏ କ୍ରିୟାପଦ ବା କ୍ରିୟାପଦ ଦ୍ୱାରା ନିର୍ଦ୍ଦେଶିତ ଶବ୍ଦ ବା ଶବ୍ଦର ସମଷ୍ଟି ହେଉଛି ବାକ୍ୟ ।

କାରଣ 'କରୁଛି' ବା 'କରଯାଉଛି' ଗୋଟିଏ କ୍ରିୟାପଦରେ କର୍ତ୍ତା ଓ କର୍ମ ଉଭୟ ସୂଚିତ ହୋଇ ରହିଛନ୍ତି । କିନ୍ତୁ ଏଠାରେ ଉଲ୍ଲେଖ କରଯାଇ ପାରେ ଯେ କର୍ତ୍ତା ଓ କର୍ମ ଉଭୟ ସୂଚିତ ଥାଇ ଗଠିତ ହୋଇଥିବା କ୍ରିୟାର ଗଠନ ରୂପ ଗୋଟିଏ ହେଲାବେଳେ ଏହାଦ୍ୱାରା ପ୍ରକାଶ ପାଉଥିବା ଅର୍ଥ ବିଷୟବସ୍ତୁକୁ ଅନୁସରଣ କରି ବା କେନ୍ଦ୍ରକରି ଦ୍ୱୈଧ ହୋଇପାରେ । ଉଦାହରଣ ସ୍ୱରୂପ, 'ମୁଁ କାମ କରୁଛି' ଓ 'ମୁଁ ଭୁଲ କରୁଛି' ବାକ୍ୟ ଦୁଇଟିରେ ପ୍ରଥମ ବାକ୍ୟ ଏକ ନିର୍ଦ୍ଦିଷ୍ଟ ବର୍ତ୍ତମାନକାଳୀନ ସମୟକୁ ବୁଝେଇଲାବେଳେ, ଦ୍ୱିତୀୟ ବାକ୍ୟରେ ସେ ସମୟ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକୁ ନେଇ ସୁଦୂରପ୍ରସାରୀ, ଅଥଚ ଦୁଇଟିଯାକ ବାକ୍ୟର କ୍ରିୟାର ଗଠନ ରୂପ ଗୋଟିଏ, କାଳ ମଧ୍ୟ ଗୋଟିଏ, ଯାହାକି ଅସମ୍ପନ୍ନ ବର୍ତ୍ତମାନ କାଳ । ବାସ୍ତବରେ କାଳ କ୍ରିୟାର ବ୍ୟାକରଣିକ ଗଠନ ପ୍ରକାଶ କଲାବେଳେ ବ୍ୟାବହାରିକ ଦୃଷ୍ଟିରୁ ବାକ୍ୟର ଉଦ୍ଦେଶ୍ୟ ଏକାଧିକ ସମୟ ସୂଚିତ କରି-ପାରେ । ବ୍ୟାକରଣିକ ଦିଗରୁ କ୍ରିୟାରେ କାଳ ପ୍ରୟୋଗ କେତୋଟି ନିର୍ଦ୍ଦିଷ୍ଟ ସଂଖ୍ୟାରେ ସୀମିତ ରହିଲାବେଳେ, ସେହି କାଳମାନଙ୍କର ବ୍ୟାବହାରିକ ସମୟ ପରିପ୍ରେକ୍ଷୀରେ ଭିନ୍ନ ହୋଇପାରେ ।

ଓଡ଼ିଆରେ କ୍ରିୟାପଦର ଅନୁଯୁକ୍ତ ବା ବିଶ୍ଳେଷଣ ଦ୍ୱାରା କାଳ ପ୍ରୟୋଗରେ 'ଏକ ନିୟମିତ ଗଠନ ପଦ୍ଧତି ପରିଲକ୍ଷିତ ହୋଇଥାଏ । ଏହି ଗଠନ ପଦ୍ଧତି ବର୍ଣ୍ଣନ ପାଇଁ ସର୍ବଦା ବିଭିନ୍ନ ଅର୍ଥ ଖୋଜିବାକୁ ଯିବାକୁ ପଡ଼େନାହିଁ । କିନ୍ତୁ ସେହି କ୍ରିୟା ବାକ୍ୟରେ ବିଷୟବସ୍ତୁ ପ୍ରକାଶ କଲା-ବେଳେ ହୁଏତ ଅର୍ଥ ବିଭିନ୍ନତା ପ୍ରକାଶ ପାଇଥାଏ । ଏହି କାରଣରୁ କ୍ରିୟାରେ କାଳ ପ୍ରୟୋଗର ରୂପତାତ୍ତ୍ୱିକ ବର୍ଣ୍ଣନାର ବିଶେଷ ଗୁରୁତ୍ୱ ରହିଛି ।

ଓଡ଼ିଆରେ କର୍ତ୍ତୃ ଓ କର୍ମଭେଦରେ କ୍ରିୟାର ବାକ୍ୟ ପ୍ରଧାନତଃ ଦୁଇ ପ୍ରକାର । କର୍ତ୍ତୃବାଚ୍ୟରେ ବାକ୍ୟର କ୍ରିୟା ବାକ୍ୟର କର୍ତ୍ତାକୁ ଅନୁସରଣ କରି କର୍ତ୍ତାର ପୁରୁଷ ଓ ବଚନ ଦ୍ୱାରା ନିୟନ୍ତ୍ରିତ ହୁଏ । କର୍ମବାଚ୍ୟରେ ବାକ୍ୟର ସମାପିକା କ୍ରିୟା କର୍ତ୍ତାର କର୍ମକୁ ଅନୁସରଣ କରି ପ୍ରାୟ ସର୍ବଦା ତୃତୀୟ ପୁରୁଷ ଏକବଚନାନ୍ତ ରୂପ ହୁଏ । ପ୍ରୟୋଜକ ଓ ଅନୁଜ୍ଞା ପ୍ରୟୋଗରେ ମଧ୍ୟ କ୍ରିୟାର କର୍ତ୍ତୃ ଓ କର୍ମ ଭେଦ ଅଛି ।

ସମାପିକା କ୍ରିୟା ବାକ୍ୟର ଏକ ପ୍ରଧାନ ଅଂଶ । କର୍ତ୍ତୃ ଓ କର୍ମ

ଭେଦରେ ସମାପିକା କ୍ରିୟାର ଗଠନରେ ଥାଏ ଧାତୁମୂଳ, କାଳ ପ୍ରତ୍ୟୟ, ସହାୟକ ଧାତୁ ଏବଂ କ୍ରିୟାର କର୍ତ୍ତା ବା କର୍ତ୍ତାର କର୍ମର ପୁରୁଷ ଓ ବଚନ ପ୍ରତ୍ୟୟ । ସମାପିକା କ୍ରିୟାର ନାସ୍ତିବାଚକରେ ଅସ୍ତିବାଚକ ସହାୟକ ଧାତୁ ବଦଳରେ ନାସ୍ତିବାଚକ ସହାୟକ ଧାତୁ ବା ନାସ୍ତିସୂଚକ ଅବ୍ୟୟ ପ୍ରୟୋଗ ହୁଏ । ସମାପିକା କ୍ରିୟାରେ ଉଭୟ କର୍ତ୍ତୃ ଓ କର୍ମ-ବାଚ୍ୟରେ ୬ଟି କାଳର ପ୍ରୟୋଗ ଅଛି । ସେଗୁଡ଼କ ହେଲା :- (୧) ବର୍ତ୍ତମାନ କାଳ, (୨ ଅତୀତ କାଳ, (୩) ଭବିଷ୍ୟତ କାଳ, (୪) ସମ୍ଭାବ୍ୟ କାଳ, (୫) ନିତ୍ୟ-ଅତୀତ କାଳ ଓ (୬) ସମ୍ଭାବନା କାଳ ।

କାଳ ପ୍ରୟୋଗରେ ସମାପିକା କ୍ରିୟାର ରୂପ ବର୍ଣ୍ଣନା ନିମ୍ନଲିଖିତ ଭାବରେ ଉପସ୍ଥାପିତ କରଯାଇ ପାରେ । କ୍ରିୟାର ଏହି ପ୍ରକାର ରୂପବର୍ଣ୍ଣନା ପାଇଁ କେବଳ କ୍ରିୟାପଦ ବା କ୍ରିୟାଗଠନକୁ ବିଷୟକୁ ନିଆଯାଇପାରେ ।

**(କ) କର୍ତ୍ତୃବାଚ୍ୟ ସମାପିକା କ୍ରିୟା :**

ମୂଳଧାତୁ ତଥା ସରଳଧାତୁମୂଳ ଗୁଡ଼ିକ କର୍ତ୍ତୃବାଚ୍ୟ ସମାପିକା କ୍ରିୟାର ଧାତୁମୂଳ । କ୍ରିୟାରେ କାଳର ପ୍ରୟୋଗରେ ପ୍ରତ୍ୟେକ କାଳରେ ସମ୍ପନ୍ନ ଓ ଅସମ୍ପନ୍ନ ରୂପର ପ୍ରତ୍ୟୟ ଯଥାକ୍ରମେ—ଇ ଓ —ଉ ଏବଂ ସମାପିକା କ୍ରିୟାର କର୍ତ୍ତାର ବିଭିନ୍ନ ପୁରୁଷ ଓ ବଚନ ପ୍ରତ୍ୟୟଗୁଡ଼ିକ ହେଉଛି —ଅ, —ଇ, —ଉ, —ଏ, —ଅନ୍ତ୍ ଇତ୍ୟାଦି ।

(୧) ବର୍ତ୍ତମାନ କାଳ—ବର୍ତ୍ତମାନ କାଳର ୩ଟି ରୂପ, ଯଥା, ସାଧାରଣ ବର୍ତ୍ତମାନ, ସମ୍ପନ୍ନ ବର୍ତ୍ତମାନ, ଓ ଅସମ୍ପନ୍ନ ବର୍ତ୍ତମାନ । ବର୍ତ୍ତମାନ କାଳର ସ୍ୱତନ୍ତ୍ର ପ୍ରତ୍ୟୟ ଚିହ୍ନ ନାହିଁ ଏବଂ ସମ୍ପନ୍ନ ଓ ଅସମ୍ପନ୍ନ ରୂପର ସହାୟକ ଧାତୁ 'ଅଛ' ।

(i) ସାଧାରଣ ବର୍ତ୍ତମାନ—ସାଧାରଣ ବର୍ତ୍ତମାନ କାଳର ସ୍ୱତନ୍ତ୍ର ପ୍ରତ୍ୟୟ ନାହିଁ ।

କ୍ରିୟାର ଗଠନ—ଧା.ମୂ + କର୍ତ୍ତା ପୁ.ବ

ଉଦାହରଣ—ଖା + ଅ / ଉ / ଏ / ଅନ୍ତ = ଖାଅ / ଖାଉ / ଖାଏ/ ଖାଆନ୍ତ

ମୁଁ / ସେ (ଘ) ଖାଏ; ତୁମେ (ମାନେ) ଖାଅ, ତୁ / ଆମେ (ବହି) ଖାଉ; ଆପଣ / ସେ (ମାନ୍ୟ) / ସେମାନେ ଖାଆନ୍ତି ।

(2) ସମ୍ପନ୍ନ ବର୍ତ୍ତମାନ—ସମ୍ପନ୍ନ ବର୍ତ୍ତମାନ ପ୍ରତ୍ୟୟ—ଇ ।

କ୍ରିୟାର ଗଠନ—ଧା.ମୂ.+ସଂ.ପ୍ର+ସହା.ଧା=କର୍ତ୍ତା ପୁ.ବ.

ଉଦାହରଣ—କର+ଇ+ଅଛ୍+ଅ / ଇ/ ଉ / ଏ / ଅନ୍ତି=
କରିଛ / କରିଛି / କରିଛୁ / କରିଛେ / କରିଛନ୍ତି ।

ମୁଁ / ସେ (ଘ) କରିଛି; ତୁମେ (ମାନେ) କରିଛ; ତୁ / ଆମେ (ବହି) କରିଛୁ; ଆମେ ବହି) କରିଛେ; ଆପଣ / ସେ (ମାନ୍ୟ) / ସେମାନେ କରୁଛନ୍ତି ।

(3) ଅସମ୍ପନ୍ନ ବର୍ତ୍ତମାନ—ଅସମ୍ପନ୍ନ ପ୍ରତ୍ୟୟ—ଉ ।

କ୍ରିୟାର ଗଠନ—ଧା.ମୂ+ଅସଂ.ପ୍ର+ସହା.ଧା-।-କର୍ତ୍ତା.ପୁ.ବ

ଉଦାହରଣ—ପଢ଼୍+ଉ+ଅଛ୍+ଅ / ଇ / ଉ / ଏ / ଅନ୍ତି=
ପଢ଼ୁଛ /ପଢ଼ୁଛି / ପଢ଼ୁଛୁ / ପଢ଼ୁଛେ / ପଢ଼ୁଛନ୍ତି ।

(୨) ଅତୀତ କାଳ—ଅତୀତ କାଳର ୩ଟି ରୂପ, ଯଥା— ସାଧାରଣ ଅତୀତ, ସମ୍ପନ୍ନ ଅତୀତ, ଓ ଅସମ୍ପନ୍ନ ଅତୀତ । ଅତୀତ କାଳର ପ୍ରତ୍ୟୟ —ଇଲ୍ / —ଲ ଏବଂ ସମ୍ପନ୍ନ ଓ ଅସମ୍ପନ୍ନ ରୂପର ସହାୟକ ଧାତୁ 'ଥା' / 'ଥି' ।

(1) ସାଧାରଣ ଅତୀତ=ସାଧାରଣ ଅତୀତର ପ୍ରତ୍ୟୟ—ଇଲ ।
—ଲ ।

କ୍ରିୟାର ଗଠନ —ଧା.ମୂ+ଅ.ପ୍ର+କର୍ତ୍ତା. ପୁ.ବ

ଉଦାହରଣ—ବସ୍+ଇଲ୍+ଅ / ଆ./ ଇ / ଉ / ଏ=ବସିଲ !
ବସିଲା / ବସିଲି / ବସିଲୁ / ବସିଲେ ।

(2) ସମ୍ପନ୍ନ ଅତୀତ - ସଂ.ପ୍ର.=ଇ

କ୍ରିୟାର ଗଠନ —ଧା.ମୂ+ସଂ.ପ୍ର+ସହା.ଧା+ଅ.ପ୍ର-।-କର୍ତ୍ତା
ପୁ.ବ ।

ଉଦାହରଣ ଯା + ଇ + ଥ + ଇଲ୍ + ଅ / ଆ / ଇ / ଉ / ଏ =
ଯାଇଥିଲ / ଯାଇଥିଲା / ଯାଇଥିଲି / ଯାଇଥିଲୁ ।
ଯାଇଥିଲେ ।

(3 ଅସମ୍ପନ୍ନ ଅତୀତ—ଅସଂ.ପ୍ର,- ଉ

କ୍ରିୟାର ଗଠନ—ଧା.ମୂ + ଅସଂ.ପ୍ର + ସହା.ଧା + ଅ.ପ୍ର
କର୍ତ୍ତା.ପୁ.ବ ।

ଉଦାହରଣ—ପଢ୍ + ଉ + ଥ + ଇଲ୍ + ଅ / ଆ / ଇ / ଉ / ଏ =
ପଢୁଥିଲ / ପଢୁଥିଲା / ପଢୁଥିଲି / ପଢୁଥିଲୁ /
ପଢୁଥିଲେ ।

(୩) ଭବିଷ୍ୟତ କାଳ – ଭବିଷ୍ୟତ କାଳର ୩ଟି ରୂପ, ଯଥା— ସାଧାରଣ ଭବିଷ୍ୟତ, ସମ୍ପନ୍ନ ଭବିଷ୍ୟତ, ଓ ଅସମ୍ପନ୍ନ ଭବିଷ୍ୟତ । ଭବିଷ୍ୟତ କାଳର ପ୍ରତ୍ୟୟ—ଇବ / ବ । ଭବିଷ୍ୟତ ସମ୍ପନ୍ନ ଓ ଅସମ୍ପନ୍ନର ସହାୟକ ଧାତୁ 'ଥା' । 'ଥ' ।

(1) ସାଧାରଣ ଭବିଷ୍ୟତ – ସାଧାରଣ ଭବିଷ୍ୟତ ପ୍ରତ୍ୟୟ—ଇବ୍
କ୍ରିୟାରଗଠନ – ଧା.ମୂ + ଉ.ପ୍ର + କର୍ତ୍ତା ପୁ.ବ

ଉଦାହରଣ—ପି + ଇବ୍ + ଅ / ଆ / ଇ / ଉ / ଏ = ପିଇବ ।
ପିଇବା / ପିଇବି / ପିଇବୁ / ପିଇବେ ।

(୧) ସମ୍ପନ୍ନ ଭବିଷ୍ୟତ – ସଂପ୍ର- ଇ

କ୍ରିୟାର ଗଠନ—ଧା.ମୂ + ସଂ.ପ୍ର + ସହା.ଧା. + ଉ.ପ୍ର +
କର୍ତ୍ତା.ପୁ.ବ.

ଉଦାହରଣ – ଆସ + ଇ + ଥ + ଇବ୍ + ଅ / ଆ / ଇ / ଉ / ଏ =
ଆସି.ଥିବ / ଆସିଥିବା / ଆସିଥିବି / ଆସିଥିବୁ / ଆସି-
ଥିବେ ।

(3) ଅସମ୍ପନ୍ନ ଭବିଷ୍ୟତ—ଅସଂ.ପ୍ର = ଉ

କ୍ରିୟାର ଗଠନ—ଧା.ମୂ + ଅସଂ.ପ୍ର. + ସହା.ଧା + ଉ.ପ୍ର + କର୍ତ୍ତା.
ପୁ.ବ ।

ଉଦାହରଣ ଦେଖ୍+ଉ+ଥ + ଇବ୍+ଅ / ଆ / ଇ / ଉ / ଏ=
ଦେଖୁଥିବ / ଦେଖୁଥିବା / ଦେଖୁଥିବି / ଦେଖିଥିବୁ /
ଦେଖୁଥିବେ ।

(୪) ନିତ୍ୟ ଅତୀତ କାଳ – ନିତ୍ୟ ଅତୀତ କାଳର ୩ଟି ରୂପ, ଯଥା - (କ) ସାଧାରଣ ନିତ୍ୟ ଅତୀତ, ( ଖ ) ସମ୍ପନ୍ନ ନିତ୍ୟ ଅତୀତ, (ଗ) ଅସମ୍ପନ୍ନ ନିତ୍ୟ ଅତୀତ ।

ବର୍ତ୍ତମାନ କାଳ ପରି ନିତ୍ୟ ଅତୀତ କାଳର ସ୍ୱତନ୍ତ୍ର ପ୍ରତ୍ୟୟ ନାହିଁ ଏବଂ ନିତ୍ୟ ଅତୀତ ସମ୍ପନ୍ନ ଓ ଅସମ୍ପନ୍ନ ରୂପର ସହାୟକ ଧାତୁ 'ଥା' । ନିତ୍ୟ ଅତୀତ କାଳର ସାଧାରଣ ନିତ୍ୟ ଅତୀତ ରୂପ ବର୍ତ୍ତମାନ କାଳର ସାଧାରଣ ବର୍ତ୍ତମାନ ରୂପ ସହିତ ସମାନ । ସର୍ତ୍ତବାଚକ ବାକ୍ୟରେ ସମ୍ଭାବ୍ୟ କାଳର ପ୍ରୟୋଗ ହୋଇଥାଏ ।

(1) ସାଧାରଣ ନିତ୍ୟ ଅତୀତ—ସାଧାରଣ ନିତ୍ୟ ଅତୀତର ସ୍ୱତନ୍ତ୍ର ପ୍ରତ୍ୟୟ ନାହିଁ ।

କ୍ରିୟାର ଗଠନ —ଧା.ମୂ.-ା-କର୍ତ୍ତା.ପୁ.ବ.

ଉଦାହରଣ - ଥା+ଅ / ଉ / ଏ / ଅନ୍ତ==ଥାଅ / ଥାଉ / ଥାଏ / ଥାଆନ୍ତି ।

(2) ସମ୍ପନ୍ନ ନିତ୍ୟ ଅତୀତ - ସଂପ୍ର.-ା-ଇ

କ୍ରିୟାର ଗଠନ—ଧା.ମୂ.+ସଂ.ପ୍ର.+ସହା.ଧା.+କର୍ତ୍ତା.ପୁ.ବ.

ଉଦାହରଣ ଲେଖ୍+ଇ+ଥା + ଅ / ଉ / ଏ / ଅନ୍ତ=ଲେଖି-
ଥାଅ / ଲେଖିଥାଉ / ଲେଖିଥାଏ / ଲେଖିଥାନ୍ତି ।

(ଖ) ଅସମ୍ପନ୍ନ ନିତ୍ୟ ଅତୀତ—ଅସଂ.ପ୍ର.– ଉ

କ୍ରିୟାର ଗଠନ— ଧା.ମୂ.+ ଅସଂ.ପ୍ର +ସହା.ଧା + କର୍ତ୍ତା
ପୁ.ବ ।

ଉଦାହରଣ ବସ୍+ଉ+ଥା+ ଅ / ଉ / ଏ / ଅନ୍ତ=ବସୁଥାଅ ।
ବସୁଥାଉ / ବସୁଥାଏ / ବସୁଥାନ୍ତି ।

(୪) ସମ୍ଭାବ୍ୟ କାଳ—ସମ୍ଭାବ୍ୟ କାଳର ୩ଟି ରୂପ, ଯଥା— ସାଧାରଣ ସମ୍ଭାବ୍ୟ, ସମ୍ପନ୍ନ ସମ୍ଭାବ୍ୟ ଓ ଅସମ୍ପନ୍ନ ସମ୍ଭାବ୍ୟ । ସମ୍ଭାବ୍ୟ କାଳର ପ୍ରତ୍ୟୟ - ଅନ୍ତ । ସମ୍ପନ୍ନ ଓ ଅସମ୍ପନ୍ନ ସମ୍ଭାବ୍ୟର ସହାୟକ ଧାତୁ 'ଥା' ।

(1) ସାଧାରଣ ସମ୍ଭାବ୍ୟ—ସାଧାରଣ ସମ୍ଭାବ୍ୟର ପ୍ରତ୍ୟୟ-ଅନ୍ତ୍

କ୍ରିୟାର ଗଠନ—ଧା.ମୂ+ସଂ.ପ୍ର+କର୍ତ୍ତା.ପୁ.ବ ।

ଉଦାହରଣ—କର + ଅନ୍ତ୍ + ଅ / ଆ / ଇ / ଉ / ଏ=କରନ୍ତ / କରନ୍ତା / କରନ୍ତି / କରନ୍ତୁ / କରନ୍ତେ ।

(2) ଅସମ୍ପନ୍ନ ସମ୍ଭାବ୍ୟ—ସଂ.ପ୍ର,- ଇ

କ୍ରିୟାର ଗଠନ—ଧା.ମୂ+ସଂ.ପ୍ର++ ସହା.ଧା. + ସଂ.ପ୍ର+ କର୍ତ୍ତା.ପୁ.ବ.

ଉଦାହରଣ - ଖା+ଇ+ଥା+ଅନ୍ତ୍+ଅ / ଆ / ଇ / ଉ / ଏ= ଖାଇଥାନ୍ତ / ଖାଇଥାନ୍ତା / ଖାଇଥାନ୍ତି / ଖାଇଥାନ୍ତୁ / ଖାଇଥାନ୍ତେ ।

(3) ଅସମ୍ପନ୍ନ ସମ୍ଭାବ୍ୟ—ଅସଂ.ପ୍ର=ଉ

କ୍ରିୟାର ଗଠନ—ଧା.ମୂ+ଅସଂ.ପ୍ର.+ସହା.ଧା+ସ.ପ୍ର+ କର୍ତ୍ତା. ପୁ.ବ ।

ଉଦାହରଣ—ଦେ+ଉ+ଥା+ଅନ୍ତ+ଅ / ଆ / ଇ / ଉ / ଏ= ଦେଉଥାନ୍ତ / ଦେଉଥାନ୍ତା / ଦେଉଥାନ୍ତି / ଦେଉ-ଥାନ୍ତୁ / ଦେଉଥାନ୍ତେ ।

(୬) ସମ୍ଭାବନା କାଳ – ସମ୍ଭାବନା କାଳର ୩ଟି ରୂପ, ଯଥା— ସାଧାରଣ ସମ୍ଭାବନା, ସମ୍ପନ୍ନ ସମ୍ଭାବନା ଓ ଅସମ୍ପନ୍ନ ସମ୍ଭାବନା । ସମ୍ଭାବନା କାଳର ପ୍ରତ୍ୟୟ—ପାର୍ ଏବଂ ସମ୍ପନ୍ନ ଓ ଅସମ୍ପନ୍ନ ସମ୍ଭାବନାର ସହାୟକ ଧାତୁ 'ଥା' । କିନ୍ତୁ 'ଥା' ଧାତୁର—ଇ ପ୍ରତ୍ୟୟାନ୍ତ ରୂପ ସହାୟକ ଧାତୁ ଭାବରେ

ଏହି କାଳରେ ପ୍ରୟୋଗ ହୋଇଥାଏ । କାଳ ପ୍ରୟୋଗରେ କ୍ରିୟାର ଏହା ଏକ ବିଶେଷ ଗଠନ ରୂପ ।

(1) ସାଧାରଣ ସମ୍ଭାବନା—ସାଧାରଣ ସମ୍ଭାବନାର ପ୍ରତ୍ୟୟ —ପାର୍ । ମୂଳଧାତୁର – ଇ ପ୍ରତ୍ୟୟାନ୍ତ ରୂପରେ ସମ୍ଭାବନା ପ୍ରତ୍ୟୟ ଯୁକ୍ତ କରି ଆବଶ୍ୟକ ପୁରୁଷ ଓ ବଚନ ପ୍ରତ୍ୟୟ ଯୋଗହୁଏ ।

କ୍ରିୟାର ଗଠନ – ମୂ.ଧା.+ଇ+ସମ୍ଭା.ପ୍ର+କର୍ତ୍ତା.ପୁ.ବ

ଉଦାହରଣ– କର+ଇ+ପାର୍+ଅ / ଉ / ଏ / ଅନ୍ତ=କରିପାର / କରିପାରୁ / କରିପାରେ / କରିପାରନ୍ତି ।

(2) ସମ୍ପନ୍ନ ସମ୍ଭାବନା—ସଂ.ପ୍ର.—ଇ । ମୂଳଧାତୁର– ଇ ପ୍ରତ୍ୟୟାନ୍ତ ରୂପରେ ସହାୟକ 'ଥା' ଧାତୁର—ଇ ପ୍ରତ୍ୟୟାନ୍ତ ରୂପ ଯୁକ୍ତହୁଏ ।

କ୍ରିୟାର ଗଠନ—ମୂ.ଧା+ଇ+ସହା.ଧା+ସମ୍ଭ°.ପ୍ର+ କର୍ତ୍ତା ପୁ.ବ ।

ଉଦାହରଣ ଶୁଣ୍+ଇ+ଥାଇ+ପାର୍+ ଅ / ଉ / ଏ / ଅନ୍ତ= ଶୁଣିଥାଇପାର / ଶୁଣିଥାଇପାରୁ / ଶୁଣିଥାଇପାରେ / ଶୁଣିଥାଇପାରନ୍ତ ।

(୨) ଅସମ୍ପନ୍ନ ସମ୍ଭାବନା—ଅସଂ.ପ୍ର.—ଉ । ମୂଳଧାତୁର––ଉ ପ୍ରତ୍ୟୟାନ୍ତ ରୂପରେ ସହାୟକ 'ଥା' ଧାତୁର—ଇ ପ୍ରତ୍ୟୟାନ୍ତ ରୂପ ଯୁକ୍ତ ହୁଏ ।

କ୍ରିୟାରଗଠନ – ମୂ.ଧା+ଉ+ସହା.ଧା + ସମ୍ଭା.ପ୍ର+କର୍ତ୍ତା ପୁ.ବ.

ଉଦାହରଣ – ଆଣ୍+ଉ+ ଥାଇ + ପାର୍+ଅ / ଇ / ଉ / ଏ / ଅନ୍ତ=ଆଣୁଥାଇପାର / ଆଣୁଥାଇପାରୁ / ଆଣୁଥାଇପାରେ / ଆଣୁଥାଇପାରନ୍ତ ।

(ଖ) କର୍ମବାଚ୍ୟ ସମାପିକା କ୍ରିୟା—କର୍ମବାଚ୍ୟ ସମାପିକା କ୍ରିୟା

ଗଠନରେ ଥାଏ କର୍ମବାଚ୍ୟ ଧାତୁମୂଳ ସହିତ ସହଯୋଗୀ ଯା / ହୋ ଧାତୁ, କାଳ ପ୍ରତ୍ୟୟ, ସହାୟକ ଧାତୁ ଓ କର୍ତ୍ତାର କର୍ମର ପୁରୁଷ ଓ ବଚନ ପ୍ରତ୍ୟୟ । କର୍ମବାଚ୍ୟ ସମାପିକା କ୍ରିୟା ବାକ୍ୟରେ କର୍ତ୍ତାର କର୍ମକୁ ଅନୁସରଣ କରୁଥିବାରୁ ଏହାର ସାଧାରଣତଃ ୩ୟ ପୁରୁଷ ଏକବଚନାନ୍ତ ରୂପ ହୁଏ ଏବଂ କର୍ତ୍ତା ମଧ୍ୟ ଆବଶ୍ୟକ କାରକ ବା ବିଭକ୍ତି ପ୍ରତ୍ୟୟ ଯୁକ୍ତ ହୁଏ । କର୍ମବାଚ୍ୟ ଧାତୁମୂଳରେ ଯୁକ୍ତ ଯା / ହୋ ଧାତୁରେ କାଳ ପ୍ରତ୍ୟୟ ଯୁକ୍ତ ହେଲେ କେତେକ ଧ୍ୱନିଗତ ପରିବର୍ତ୍ତନ ସାଧିତ ହୁଏ । ସାଧାରଣ ଅତୀତ କାଳରେ 'ଯା' ଧାତୁ 'ଗ' ରୂପ ହୋଇ ବିଭିନ୍ନ ପ୍ରତ୍ୟୟ ଯୁକ୍ତ ହୁଏ ଏବଂ 'ହୋ' ଧାତୁରେ ବିଭିନ୍ନ ପ୍ରତ୍ୟୟ ଯୁକ୍ତ ହେଲେ ସ୍ୱରନ୍ତ ପରିବର୍ତ୍ତନ ହୋଇ 'ହେ', 'ହୁ' ଇତ୍ୟାଦି ରୂପ ହୁଏ । କର୍ତ୍ତୃ-ବାଚ୍ୟ ସମାପିକା କ୍ରିୟାରେ ମଧ୍ୟ ଏ ପ୍ରକାର କାଳର ପ୍ରୟୋଗ ହୁଏ ।

(୧) ବର୍ତ୍ତମାନ କାଳ—ବର୍ତ୍ତମାନ କାଳର ୩ଟି ରୂପ, ଯଥା, ସାଧାରଣ ବର୍ତ୍ତମାନ, ସମ୍ପନ୍ନ ବର୍ତ୍ତମାନ ଓ ଅସମ୍ପନ୍ନ ବର୍ତ୍ତମାନ ।

(1) ସାଧାରଣ ବର୍ତ୍ତମାନ—ସାଧାରଣ ବର୍ତ୍ତମାନର ପ୍ରତ୍ୟୟ ନାହିଁ ।

କ୍ରିୟାର ଗଠନ - କର୍ମ.ଧା.ମୂ. + ଯା / ହୋ / + କର୍ମ.ପୁ. ବ. (୩ୟ ପୁରୁଷ ଏକବଚନ)

ଉଦାହରଣ କର + ଯା / ହୋ+ଏ=କରଯାଏ / କରହୁଏ (ଓ+ଏ>ଉ)

(2) ସମ୍ପନ୍ନ ବର୍ତ୍ତମାନ—ସଂ.ପ୍ର.—ଇ

କ୍ରିୟାର ଗଠନ—କର୍ମ.ଧା.ମୂ + ଯା / ହୋ + ସଂ.ପ୍ର + ସହା.ଧା + କର୍ମ.ପୁ.ବ ।

ଉଦାହରଣ—ଲେଖା +ଯା / ହୋ+ଇ+ଅଛ୍+ ଇ=କରଯାଇଛି / କରହୋଇଛି / କରହେଇଛି ।

(3) ଅସମ୍ପନ୍ନ ବର୍ତ୍ତମାନ— ଅସଂ.ପ୍ର.— ଉ

କ୍ରିୟାର ଗଠନ —କର୍ମ.ଧା.ମୂ + ଯା / ହୋ + ସଂ.ପ୍ର + ସହା.ଧା. + କର୍ମ.ପୁ.ବ

ଉଦାହରଣ—ପଢା + ଯା/ହୋ + ଉ + ଅଛ୍ + ଇ = ପଢାଯାଉଛି / ପଢାହେଉଛି / ପଢାହଉଛି ।

(୨) ଅତୀତ କାଳ—ଅତୀତ କାଳର ୩ଟି ରୂପ, ଯଥା – ସାଧାରଣ ଅତୀତ, ସମ୍ପନ୍ନ ଅତୀତ ଓ ଅସମ୍ପନ୍ନ ଅତୀତ । ଅତୀତ କାଳର ପ୍ରତ୍ୟୟ ଇଲ୍ । – ଲ ।

(1) ସାଧାରଣ ଅତୀତ – ସାଧାରଣ ଅତୀତ ପ୍ରତ୍ୟୟ— ଇଲ । – ଲ ।

କ୍ରିୟାର ଗଠନ—କର୍ମ.ଧା.ମୂ + ଯା / ହୋ + ଅ.ପ୍ର + ପୁ.ବ

ଉଦାହରଣ—କର + ଯା / ହୋ + ଇଲ୍ + ଆ = କରଗଲ / କର-ହେଲ ।

(2) ସମ୍ପନ୍ନ ଅତୀତ – ଅସଂ.ପ୍ର. ଇ

କ୍ରିୟାର ଗଠନ—କର୍ମ.ଧା.ମୂ + ଯା / ହୋ + ସଂ.ପ୍ର + ସହା.ଧା + ଅ.ପ୍ର + ପୁ.ବ.

ଉଦାହରଣ – ଶୁଣା + ଯା / ହୋ + ଇ + ଥା + ଇଲ୍ + ଆ = ଶୁଣାଯାଇଥିଲ / ଶୁଣାହୋଇଥିଲ / ଶୁଣାହେଇଥିଲ ।

(3) ଅସମ୍ପନ୍ନ ଅତୀତ – ଅସଂ.ପ୍ର.— ଉ

କ୍ରିୟାର ଗଠନ—କର୍ମ.ଧା.ମୂ + ଯା / ହୋ + ଅସଂ.ପ୍ର. + ସହା.ଧା. + ଅ.ପ୍ର. + ପୁ.ବ.

ଉଦାହରଣ—କିଣା + ଯା/ହୋ + ଉ + ଥା + ଇଲ୍ + ଆ = କିଣାଯାଇଥିଲ/କିଣାହେଉଥିଲ / କିଣାହଉଥିଲ ।

(୩) ଭବିଷ୍ୟତ କାଳ—ଭବିଷ୍ୟତ କାଳର ୩ଟି ରୂପ ଯଥା— ସାଧାରଣ ଭବିଷ୍ୟତ, ସମ୍ପନ୍ନ ଭବିଷ୍ୟତ ଓ ଅସମ୍ପନ୍ନ ଭବିଷ୍ୟତ । ଭବିଷ୍ୟତ କାଳର ପ୍ରତ୍ୟୟ – ଇବ ।

(i) ସାଧାରଣ ଭବିଷ୍ୟତ—ସାଧାରଣ ଭବିଷ୍ୟତ ପ୍ରତ୍ୟୟ—ଇବ

କ୍ରିୟାର ଗଠନ—କର୍ମ ଧା.ମୂ+ଯା / ହୋ / +ଭ.ପ୍ର+ପୁ.ବ.

ଉଦାହରଣ କର+ଯା / ହୋ+ଇବ୍+ଅ=କରାଯିବ / କର-
ହେବ / କରହେବ ।

(ii) ସମ୍ପନ୍ନ ଭବିଷ୍ୟତ ସଂ.ପ୍ର—ଇ

କ୍ରିୟାର ଗଠନ—କର୍ମ.ଧା.ମୂ+ଯା / ହୋ+ସଂ.ପ୍ର+ସହା.ଧା+
ଭ.ପ୍ର+ପୁ.ବ

ଉଦାହରଣ—ଦେଖା+ଯା / ହୋ+ଇ+ଥା+ଇବ୍+ଅ=
ଦେଖାଯାଇଥିବ / ଦେଖା ହୋଇଥିବ / ଦେଖା
ହେଇଥିବ ।

(iii) ଅସମ୍ପନ୍ନ ଭବିଷ୍ୟତ ଅସଂପ୍ର.-।-ଉ

କ୍ରିୟାର ଗଠନ—କର୍ମ.ଧା.ମୂ+ଯା / ହୋ+ଅସଂ.ପ୍ର+ସହା.ଧା
+ଭ.ପ୍ର+ପୁ ବ

ଉଦାହରଣ—ଦିଆ+ଯା / ହୋ+ଉ+ଥା+ଇବ୍+ଅ=ଦିଆ-
ଯାଉଥିବ / ଦିଆହେଉଥିବ / ଦିଆହଉଥିବ ।

( ) ନିତ୍ୟ ଅତୀତ କାଳ—ନିତ୍ୟ ଅତୀତ କାଳର ୩ଟି ରୂପ, ଯଥା (i) ସାଧାରଣ ନିତ୍ୟ ଅତୀତ, ( ii ) ସମ୍ପନ୍ନ ନିତ୍ୟ ଅତୀତ, (iii) ଅସମ୍ପନ୍ନ ନିତ୍ୟ ଅତୀତ । କର୍ମବାଚ୍ୟ ନିତ୍ୟ ଅତୀତ କାଳର ପ୍ରୟୋଗ କର୍ମବାଚ୍ୟ ବର୍ତ୍ତମାନ କାଳ ପରି । କିନ୍ତୁ ସମ୍ପନ୍ନ ଓ ଅସମ୍ପନ୍ନ ନିତ୍ୟ ଅତୀତ ରୂପରେ ସହାୟକ ଧାତୁ ଅଛ୍ ପରିବର୍ତ୍ତେ 'ଥା' ।

(i) ସାଧାରଣ ନିତ୍ୟ ଅତୀତ – ସାଧାରଣ ନିତ୍ୟ ଅତୀତର ରୂପ କର୍ମବାଚ୍ୟ ସାଧାରଣ ବର୍ତ୍ତମାନ କାଳ ପରି । ସାଧାରଣ ନିତ୍ୟ ଅତୀତର ସ୍ୱତନ୍ତ୍ର ପ୍ରତ୍ୟୟ ନାହିଁ ।

କ୍ରିୟାର ଗଠନ—କର୍ମ.ଧା ମୂ+ଯା/ହୋ+ପୁ ବ

ଉଦାହରଣ--ପଢ଼ା + ଯା/ହୋ + ଏ = ପଢ଼ାଯାଏ / ପଢ଼ାହୁଏ ।

(ii) ସମ୍ପନ୍ନ ନିତ୍ୟ ଅତୀତ – ସଂ.ପ୍ର ଇ

କ୍ରିୟାର ଗଠନ - କର୍ମ.ଧା ମୂ + ଯା/ହୋ + ସଂ ପ୍ର + ସହା ଧା + ପୁ.ବ

ଉଦାହରଣ—ବିକା + ଯା । ହୋ + ଇ + ଥା + ଏ = ବିକାଯାଇଥାଏ / ବିକାହୋଇଥାଏ / ବିକାହେଇଥାଏ ।

(iii) ଅସମ୍ପନ୍ନ ନିତ୍ୟ ଅତୀତ - ଅସଂ.ପ୍ର ଉ

କ୍ରିୟାର ଗଠନ--କର୍ମ.ଧା.ମୂ + ଯା / ହୋ + ଅସଂ.ପ୍ର. + ସହା.ଧା. + ପୁ.ବ.

ଉଦାହରଣ—ନିଆ + ଯା/ହୋ + ଉ + ଥା + ଏ = ନିଆଯାଉଥାଏ / ନିଆହେଉଥାଏ / ନିଆହଉଥାଏ ।

(5) ସମ୍ଭାବ୍ୟ କାଳ – ସମ୍ଭାବ୍ୟ କାଳର 3 ଟି ରୂପ, ଯଥା— (i) ସାଧାରଣ ସମ୍ଭାବ୍ୟ (ii) ସମ୍ପନ୍ନ ସମ୍ଭାବ୍ୟ (iii) ଅସମ୍ପନ୍ନ ସମ୍ଭାବ୍ୟ । ସମ୍ଭାବ୍ୟ କାଳର ପ୍ରତ୍ୟୟ – ଅନ୍ତ୍ । ସମ୍ଭାବ୍ୟ କାଳର ପ୍ରୟୋଗ ସର୍ତ୍ତବାଚକ ବାକ୍ୟରେ ହୋଇଥାଏ ।

(i) ସାଧାରଣ ସମ୍ଭାବ୍ୟ - ସାଧାରଣ ସମ୍ଭାବ୍ୟପ୍ରତ୍ୟୟ - ଅନ୍ତ୍

କ୍ରିୟାର ଗଠନ—କର୍ମ.ଧା.ମୂ. + ଯା / ହୋ + ସ.ପ୍ର + ପୁ.ବ.

ଉଦାହରଣ- କର + ଯା / ହୋ + ଅନ୍ତ୍ + ଆ = କରଯାଆନ୍ତା / କରହୁଆନ୍ତା ।

(ii) ସମ୍ପନ୍ନ ସମ୍ଭାବ୍ୟ—ସଂ.ପ୍ର.—ଇ

କ୍ରିୟାର ଗଠନ—କର୍ମ.ଧା.ମୂ + ଯା / ହୋ + ସଂ ପ୍ର + ସହା. ଧା + ସ.ପ୍ର + ପୁ.ବ

ଉଦାହରଣ—ଉଠା + ଯା / ହୋ + ଇ + ଥା + ଅନ୍ତ୍ + ଆ = ଉଠାଯାଇଥାନ୍ତା / ଉଠାହୋଇଥାନ୍ତା / ଉଠାହେଇଥାନ୍ତା ।

(iii) ଅସମ୍ପନ୍ନ ସମ୍ଭାବ୍ୟ—ଅସଂ.ପ୍ର.—ଉ

କ୍ରିୟାର ଗଠନ —କର୍ମ.ଧା.ମୂ +ଯା / ହୋ+ଅସଂ.ପ୍ର +ସହା.ଧା.
+ସ.ପ୍ର+ପୁ.ବ

ଉଦାହରଣ—ଅଣା+ଯା/ହୋ+ଉ+ଥା+ଅନ୍ତ୍+ଆ= ଅଣା-
ଯାଉଥାନ୍ତା / ଅଣାହେଉଥାନ୍ତା / ଅଣାହଉଥାନ୍ତା ।

(୬) ସମ୍ଭାବନା କାଳ—ସମ୍ଭାବନା କାଳର ୩ଟି ରୂପ, ଯଥା -
(i) ସାଧାରଣ ସମ୍ଭାବନା (i) ସମ୍ପନ୍ନ ସମ୍ଭାବନା (ii)
ଅସମ୍ପନ୍ନ ସମ୍ଭାବନା । କର୍ତ୍ତୃବାଚ୍ୟ ପରି କାଳ ପ୍ରୟୋଗରେ
କର୍ମବାଚ୍ୟରେ ମଧ୍ୟ ଏହା ଏକ ବିଶେଷ ଗଠନ ରୂପ ।

(i) ସାଧାରଣ ସମ୍ଭାବନା - ସାଧାରଣ ସମ୍ଭାବନା ପ୍ରତ୍ୟୟ—
ପାର୍ । କର୍ମବାଚ୍ୟ ଧାତୁମୂଳରେ ଯା / ହୋ ଧାତୁ ସହିତ
—ଇ ପ୍ରତ୍ୟୟ ଯୁକ୍ତ କରି ସମ୍ଭାବନା ପ୍ରତ୍ୟୟ ଯୁକ୍ତ ହୁଏ ।

କ୍ରିୟାର ଗଠନ—କର୍ମ.ଧା.ମୂ + ଯା / ହୋ+ଇ+ସମ୍ଭା.ପ୍ର
+.ପୁ.ବ

ଉଦାହରଣ—ପଢା+ଯା/ ହୋ+ଇ+ପାର୍+ଏ=ପଢାଯାଇ-
ପାରେ/ପଢାହୋଇପାରେ / ପଢାହେଇପାରେ ।

(ii) ସମ୍ପନ୍ନ ସମ୍ଭାବନା—ସଂ.ପ୍ର.--ଇ । କର୍ମବାଚ୍ୟ ଧାତୁମୂଳରେ
ଯା / ହୋ ଧାତୁରେ ସମ୍ପନ୍ନ —ଇ ପ୍ରତ୍ୟୟ ଯୁକ୍ତ ହୋଇ
ସହାୟକ 'ଥା' ଧାତୁର —ଇ ପ୍ରତ୍ୟୟାନ୍ତ ରୂପ ଯୋଗ
ହୁଏ ।

କ୍ରିୟାର ଗଠନ କର୍ମ.ଧା.ମୂ.+ଯା / ହୋ+ସଂ.ପ୍ର.+ ସହା.ଧା
+ସମ୍ଭା.ପ୍ର.+ପୁ.ବ.

ଉଦାହରଣ ଲେଖା+ଯା / ହୋ +ଇ+ଥାଇ+ପାର୍+ ଏ=
ଲେଖାଯାଇଥାଇପାରେ / ଲେଖାହୋଇଥାଇପାରେ /
ଲେଖାହେଇଥାଇପାରେ ।

(iii) ଅସମ୍ପନ୍ନ ସମ୍ଭାବନା—ଅସଂ.ପ୍ର.—ଉ । କର୍ମବାଚ୍ୟ ଧାତୁ-
ମୂଳରେ ଯା / ହୋ ଧାତୁରେ ଅସଂପନ୍ନ —ଉ ପ୍ରତ୍ୟୟ ଯୁକ୍ତ

ହୋଇ ସହାୟକ ଥା' ଧାତୁର —ଇ ପ୍ରତ୍ୟୟାନ୍ତ ରୂପ ଯୁକ୍ତ ହୁଏ ।

କ୍ରିୟାର ଗଠନ   କର୍ମ ଧା.ମୂ.+ଯା / ହୋ+ଅସ°.ପ୍ର+ସହା.ଧା+ସମ୍ଭା.ପ୍ର+ପୁ.ବ.

ଉଦାହରଣ   ଦିଆ+ଯା / ହୋ+ଉ+ଥାଇ+ପାର୍+ଏ==ଦିଆଯାଉଥାଇପାରେ / ଦିଆହେଉଥାଇପାରେ / ଦିଆହଉଥାଇପାରେ ।

ଅନ୍ୱୟ ବା ବିଶ୍ଳେଷଣ ପଦ୍ଧତିରେ ସମାପିକା କ୍ରିୟାରେ କାଳ ପ୍ରୟୋଗର ରୂପତାତ୍ତ୍ୱିକ ଆଲୋଚନା ଓଡ଼ିଆରେ ଅନୁଜ୍ଞା ଓ ପ୍ରୟୋଜାର୍ଥକ କ୍ଷେତ୍ରରେ ମଧ୍ୟ କରାଯାଇପାରେ । ସମାପିକା କ୍ରିୟାର ଦୁଇ ପ୍ରଧାନ ବାଚ୍ୟ କର୍ତ୍ତୃ ଓ କର୍ମ ଭେଦରେ ଏହି ବିଶ୍ଳେଷଣ ସମ୍ଭବ ।

କ୍ରିୟାରେ କାଳ ପ୍ରୟୋଗର ରୂପତାତ୍ତ୍ୱିକ ଆଲୋଚନାରୁ ଏହା ହିଁ ପ୍ରତିପାଦନ କରାଯାଇପାରେ ଯେ 'କାଳ' ହେଉଛି ଭାଷାର ବ୍ୟାକରଣିକ ସୂତ୍ର ବା ନିୟମ । ଏହି ସୂତ୍ରକୁ ଅନୁସରଣ କରି କ୍ରିୟାପଦଗୁଡ଼ିକ ଗଠିତ । କିନ୍ତୁ 'କାଳ' ଭାଷାର ବ୍ୟାକରଣିକ ନିୟମ ପ୍ରକାଶ କରୁଥିଲେ ମଧ୍ୟ ଭାଷାରେ କ୍ରିୟାପଦଗୁଡ଼ିକର ପ୍ରୟୋଗ ବିଭିନ୍ନ ବ୍ୟବହାରିକ ସମୟ ଓ ବିଷୟବସ୍ତୁଗତ ଗୂଢ଼ାର୍ଥର ସୂଚନା ଦିଏ । ଅନବରତ ବହି ଯାଉଥିବା ସମୟକୁ ମିନିଟ, ଘଣ୍ଟା, ଦିନ, ମାସ, ବର୍ଷ ଇତ୍ୟାଦି ଦ୍ୱାରା ଭାଗ କରି ହିସାବ କରିବା ପରି ଭାଷାର ବ୍ୟାକରଣରେ କାଳର ପ୍ରୟୋଗ ଦ୍ୱାରା ସମୟର ବିଭଜନକୁ ସହଜ, ସୂକ୍ଷ୍ମ ଓ ଶୃଙ୍ଖଳିତ ଭାବରେ ପ୍ରକାଶ କରିବାର ପ୍ରୟାସ କରାଯାଏ । ବ୍ୟାକରଣିକ କାଳ ଓ ସମୟର ସମ୍ପର୍କକୁ ଉପଲବ୍ଧି କରି ଆଜିକାଲି ପୃଥିବୀର ବିଭିନ୍ନ ଭାଷାରେ ଚର୍ଚ୍ଚା କରାଯାଉଥିବା ଆଧୁନିକ ଭାଷାବିଜ୍ଞାନରେ ଏ ବିଷୟରେ ବିଶେଷ ଗୁରୁତ୍ୱ ଦିଆଯାଉଛି । ଭାଷାବିଜ୍ଞାନରେ କ୍ରିୟାର କାଳର ଆଲୋଚନା ରୂପତତ୍ତ୍ୱ ବା **morphology**ର ବିଷୟବସ୍ତୁ ହେବା ବେଳେ ସେହି କାଳ ଦ୍ୱାରା ସୂଚିତ ସମୟର ଆଲୋଚନା ଅର୍ଥତତ୍ତ୍ୱ ବା **semantics**ର ବିଷୟବସ୍ତୁ ହୋଇଯାଇଛି । କିନ୍ତୁ ରୂପତତ୍ତ୍ୱ ଓ ଅର୍ଥତତ୍ତ୍ୱ ଉଭୟ ଭାଷା ବିଜ୍ଞାନର ଦୁଇଟି ଉପବିଭାଗ ହୋଇଥିବା ଦୃଷ୍ଟିରୁ ଉଭୟକୁ ପରସ୍ପରଠାରୁ ଅଭିନ୍ନ ବୋଲି ସ୍ୱୀକାର କରାଯାଇଥାଏ ।

ସଂକ୍ଷିପ୍ତିକରଣ ସୂଚନା

ଅତୀତ ପ୍ରତ୍ୟୟ—ଅ.ପ୍ର.
ଅସମ୍ପନ୍ନ ପ୍ରତ୍ୟୟ—ଅସଂ.ପ୍ର.
କର୍ତ୍ତାର ପୁରୁଷ ବଚନ—କର୍ତ୍ତା ପୁ.ବ
କର୍ତ୍ତାର କର୍ମର ପୁରୁଷ ବଚନ - କର୍ମ ପୁ.ବ / ପୁ.ବ
ଧାତୁ ମୂଳ ଧା.ମୂ
ଭବିଷ୍ୟତ ପ୍ରତ୍ୟୟ—ଭ ପ୍ର
ସମ୍ଭାବନା ପ୍ରତ୍ୟୟ—ସମ୍ଭା.ପ୍ର
ସମ୍ଭାବ୍ୟ ପ୍ରତ୍ୟୟ=ସ.ପ୍ର
ସହାୟକ ଧାତୁ—ସହା ଧା

ପ୍ରସଙ୍ଗ ସୂଚନା


1. Verma, S. K., Krishnaswamy, K.; 'Modern Linguistics An Introduction', Delhi, Oxford University Press, 1980, Page-10-13
2. Ibid
3. ପଟ୍ଟନାୟକ, ଦେବୀ ପ୍ରସନ୍ନ; 'ଓଡ଼ିଆ ଭାଷା ଓ ଭାଷାବିଜ୍ଞାନ,' କଟକ, ଗ୍ରନ୍ଥମନ୍ଦିର, 198 , ପୃ-74
4. ମହାପାତ୍ର, ବିଜୟ ପ୍ରସାଦ; 'ଓଡ଼ିଆ ଭାଷାତାତ୍ତ୍ୱିକ ପ୍ରବନ୍ଧ', କଟକ, ଗ୍ରନ୍ଥମନ୍ଦିର, 1983, ପୃ.15


ଅନ୍ୟାନ୍ୟ ସହାୟକ ଗ୍ରନ୍ଥସୂଚୀ


1. ଦାଶ, ସୂର୍ଯ୍ୟନାରାୟଣ; 'ଭାଷାବୋଧ ଓଡ଼ିଆ ବ୍ୟାକରଣ' କଟକ, ଉତ୍କଳ ସାହିତ୍ୟ ପ୍ରେସରେ ମୁଦ୍ରିତ, 1939
2. ଦାସ, ନୀଳକଣ୍ଠ; 'ଓଡ଼ିଆ ବ୍ୟାକରଣ' କଟକ, କଟକ ଟ୍ରେଡ଼ିଂ କମ୍ପାନୀ, 1935

(ପଣ୍ଡିତ) ମହାପାତ୍ର, ନାରାୟଣ ଦାସ, ଶ୍ରୀଧର; 'ସର୍ବସାର ବ୍ୟାକରଣ' କଟକ, ନିଉ ଷ୍ଟୁଡେଣ୍ଟସ ଷ୍ଟୋର, 1943

4 ମହାନ୍ତି, ବିଜୟଲକ୍ଷ୍ମୀ; ଝଙ୍କାର, 'ଓଡ଼ିଆ ନାସ୍ତିବାଚକ : ଏକ ଆଲୋଚନା', ଜୁଲାଇ, 1980

5 ,, ,, ଝଙ୍କାର; 'ଓଡ଼ିଆ ଅନୁଜ୍ଞା କ୍ରିୟାରୂପର ଆଲୋଚନା', ଜାନୁୟାରୀ, 1981

6 ,, ,, ଝଙ୍କାର, ' ଓଡ଼ିଆ ବାଚ୍ୟ ', ଡିସେମ୍ବର, 1984

7. Beams. John; 'A Comparative Grammar of the Modern Aryan Languages of India' vol. [illegible], Part II, New Delhi, Munsiran Mahoharlal, Seeond Indian Reprint, 1970.

8. Mohanty, Bijayalaxmi; 'An Intensive Course in Oriya' Mysore, Central Institute of Indian Languages. 1989.

9. Palmer, Frank; Grammar', Penguin Books Ltd., England, Hamonds worth, 1971

10. Pattanaik, D.P.; Das, G.N.; 'Conversational Oriya', Mysore, Smt. Sulakshana Pattanaik, 197[illegible]

—o—

# ଦ୍ୱିତୀୟ ଭାଷା ଭାବରେ ଓଡ଼ିଆ ଗଦ୍ୟ ଅଧ୍ୟୟନ

ଭାଷାରେ ପ୍ରକାଶ ପାଉଥିବା ବିଷୟବସ୍ତୁକୁ ଦୁଇ ମୁଖ୍ୟ ରୂପରେ ଭାଗ କରାଯାଇପାରେ । ପଦ୍ୟ ରୂପରେ ଓ ଗଦ୍ୟ ରୂପରେ । ପଦ୍ୟରେ ବ୍ୟବହୃତ ଭାଷା ଓ ଗଦ୍ୟରେ ବ୍ୟବହୃତ ଭାଷା ପରସ୍ପରଠାରୁ ପୃଥକ କିନ୍ତୁ ପଦ୍ୟ ଅପେକ୍ଷା ଗଦ୍ୟର ବ୍ୟବହାର ହିଁ ଅଧିକ । ଦୈନନ୍ଦିନ କଥାବାର୍ତ୍ତାରେ ଭାବବିନିମୟଠାରୁ ଆରମ୍ଭ କରି ସାହିତ୍ୟର ବିଭିନ୍ନ ବିଭାଗ, ଯେପରି ଗଳ୍ପ, ପ୍ରବନ୍ଧ, ସମାଲୋଚନା, ନାଟକ, ଜୀବନୀ ତଥା ବ୍ୟବହାରଠାରୁ ଆରମ୍ଭ କରି କଳିକଜିଆ ପର୍ଯ୍ୟନ୍ତ ଗଦ୍ୟରେ କରାଯାଇ ଥାଏ । କିନ୍ତୁ ଏ ସବୁକୁ ପଦ୍ୟରେ ମଧ୍ୟ ପ୍ରକାଶ କରିହେବ । ଏ ସବୁକୁ ପଦ୍ୟରେ ପ୍ରକାଶ କରିବାକୁ ହେଲେ ଭାଷାକୁ ପଦ୍ୟମୁଖୀ କରିବାକୁ ପଡ଼େ । ଏଥିରେ ଭାଷାର ସ୍ୱାଭାବିକ ଗଠନକୁ ପଦ୍ୟର କେତେକ ଧରାବନ୍ଧା ନିୟମଦ୍ୱାରା ବାନ୍ଧିବାକୁ ହୁଏ । ସ୍ୱାଭାବିକ ଭାବରେ ପଦ୍ୟରେ ଅନବରତ କଥାବାର୍ତ୍ତା ବା ଭାବବିନିମୟ କରିବା କିନ୍ତୁ ସଂପୂର୍ଣ୍ଣ ଅସମ୍ଭବ । ଗଦ୍ୟରେ ବାକ୍ ବିଷୟରେ ଭାଷାର ସ୍ୱାଭାବିକତା ରକ୍ଷା ହେବା ସଙ୍ଗେ ସଙ୍ଗେ ପ୍ରକାଶ ଭଙ୍ଗୀ ମଧ୍ୟ ସହଜ ହୁଏ । ଏଠାରେ ଦ୍ୱିତୀୟ ଭାଷା ଅଧ୍ୟୟନ କ୍ଷେତ୍ରରେ ଗଦ୍ୟର ଭୂମିକା ବିଷୟରେ ଆଲୋଚନା କରାଯାଉଛି ।

ଭାଷା ବିଜ୍ଞାନର ପରିଣତି ସ୍ୱରୂପ ବର୍ତ୍ତମାନ ଭାଷା-ଆଲୋଚନା, ଭାଷା-ବ୍ୟବହାର ଓ ଭାଷା—ଅଧ୍ୟୟନ ପ୍ରତି ଅଧିକ ଦୃଷ୍ଟି ଦିଆଯାଉଛି । ତେଣୁ ମାତୃଭାଷା ଭାବରେ ଭାଷା-ଅଧ୍ୟୟନକୁ ଯେତିକି ଗୁରୁତ୍ୱ ଦିଆଯାଉଛି ଦ୍ୱିତୀୟ ଭାଷା ବା ବିଦେଶୀ ଭାଷା ଭାବରେ ଭାଷା-ଅଧ୍ୟୟନକୁ ମଧ୍ୟ ସେତିକି ବା ତା'ଠାରୁ ଅଧିକ ଗୁରୁତ୍ୱ ଦିଆଯାଉଛି ।

ସବୁଭାଷା ପରି ମାତୃଭାଷା ଭାବରେ ଓଡ଼ିଆ ଭାଷାର ଅଧ୍ୟୟନ ଓ ଦ୍ୱିତୀୟ ଭାଷା ଭାବରେ ଏହାକୁ ଅଧ୍ୟୟନ କରାଇବା ପାଇଁ ବର୍ତ୍ତମାନ କେତେକ ସୁପରିକଳ୍ପିତ, ସ୍ୱତନ୍ତ୍ର ପଦ୍ଧତି ଅନୁସରଣ କରାଯାଇଛି । ମାତୃ-

ଭାଷା ଅଧ୍ୟୟନ ବିଷୟରେ ଏଠାରେ ଏତିକି କହିଲେ ଯଥେଷ୍ଟ ହେବ ଯେ ମାତୃଭାଷା ଶିଶୁ ଅବସ୍ଥାରୁ ଅଧ୍ୟୟନ କରଯାଏ ଏବଂ ଶିଶୁ ଯେତେବେଳେ ଅଧ୍ୟୟନ ଆରମ୍ଭ କରେ ସେତେବେଳେ ସେ ଭାଷା ବିଷୟରେ ସଚେତନ ନହେଲେ ମଧ୍ୟ ଭାଷା ବ୍ୟବହାର କରିବାକୁ ଓ ଭାଷା ପ୍ରୟୋଗ ଶୈଳୀକୁ ଆୟତ୍ତ କରିବାକୁ ସକ୍ଷମ ହୋଇଥାଏ । କାରଣ ଅଣ-ଭାଷୀ କଲେ ଭାଷା ବ୍ୟବହାରରେ କୌଣସି ତ୍ରୁଟିପୂର୍ଣ୍ଣ ବାକ୍ୟ ବ୍ୟବହାର କଲେ ସେ ତାହା ସହଜରେ ଧରିଦେଇ ପାରେ । ନିଜ ଭାଷା ଅଧ୍ୟୟନରେ ତାକୁ ତା'ର ପରିବେଶ, ତା'ର ଜାଣିବାର ପ୍ରବୃତ୍ତି ଓ ଆବଶ୍ୟକତା ଏବଂ ତା'ର ମୁକ୍ତ ପ୍ରାକୃତିକ ମନହିଁ ଅଧିକ ସାହାଯ୍ୟ କରିଥାଏ । କିନ୍ତୁ ଦ୍ୱିତୀୟ ଭାଷା-ଅଧ୍ୟୟନ କ୍ଷେତ୍ରରେ ଶିକ୍ଷାର୍ଥୀମାନେ ସାଧାରଣତଃ ପ୍ରାପ୍ତବୟସ୍କ । ଭାଷା-ଅଧ୍ୟୟନ ଏମାନଙ୍କ ପାଇଁ ସ୍ୱତଃ ପ୍ରବୃତ୍ତ ହେଉ ବା ଆବଶ୍ୟକତା ଦୃଷ୍ଟିରୁ ହେଉ ଏମାନଙ୍କୁ ସେଥିପାଇଁ କେତେକ ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡ଼େ । ଏ ବିଷୟରେ ପରେ ଆଲୋଚନା କରଯାଉଛି ।

ଦ୍ୱିତୀୟ ଭାଷା ଅଧ୍ୟୟନ ସମୟରେ ପଦ୍ୟ ଓ ଗଦ୍ୟ ଉଭୟକୁ ଅଧ୍ୟୟନ କରିବାକୁ ପଡ଼ଲେ ମଧ୍ୟ ଭାଷା-ଅଧ୍ୟୟନ କହିଲେ ମୁଖ୍ୟତଃ ଗଦ୍ୟ-ଅଧ୍ୟୟନକୁ ହିଁ ବୁଝାଏ । କେବଳ ଗଦ୍ୟରେ ବ୍ୟକ୍ତ ବିଷୟକୁ ଅଧ୍ୟୟନ କରି ପଦ୍ୟକୁ ଯଦି ବାଦ୍ ଦିଆଯାଏ, ତେବେ ଭାଷାଶିକ୍ଷା ସମ୍ପୂର୍ଣ୍ଣ ନ ହେଲେ ମଧ୍ୟ ଅସମ୍ପୂର୍ଣ୍ଣ ହୋଇଛି ବୋଲି କହିହେବ ନାହିଁ । କାରଣ ଏହାଦ୍ୱାରା ଦୈନନ୍ଦିନ ଜୀବନରେ ଭାବବିନିମୟର ଆବଶ୍ୟକତାକୁ ଦୂର କରଯାଇ ପାରିବା ସଙ୍ଗେ ସଙ୍ଗେ ସାହିତ୍ୟ ଆଲୋଚନାର ଅନ୍ୟ ବହୁ ଦିଗକୁ ମଧ୍ୟ ଆଲୋଚନା କରଯାଇପାରିବ । କିନ୍ତୁ ଏହା ବୋଲି ଭାଷା-ଅଧ୍ୟୟନରେ ପଦ୍ୟକୁ କଦାପି ସମ୍ପୂର୍ଣ୍ଣ ବାଦ୍ ଦିଆଯାଇ ନ ପାରେ ।

ଓଡ଼ଆକୁ ଦ୍ୱିତୀୟ ଭଷା ଭାବରେ ଅଣ-ଓଡ଼ଆ ପ୍ରାପ୍ତବୟସ୍କ ଶିକ୍ଷକମାନଙ୍କୁ ଶିକ୍ଷା ଦେବା ପାଇଁ ମହୀଶୂରସ୍ଥିତ ଭାରତୀୟ ଭାଷା ସଂସ୍ଥାନର ଶାଖା ଅନୁଷ୍ଠାନ ପୂର୍ବାଞ୍ଚଳ ଭାଷାକେନ୍ଦ୍ରରେ ପ୍ରଥମ ଉଦ୍ୟମ କରଯାଇଛି । ଏ କାର୍ଯ୍ୟକ୍ରମକୁ ୩ଟି ସ୍ତରରେ ଭାଗ କରଯାଇଛି—ପ୍ରାଥମିକ ସ୍ତର, ମାଧ୍ୟମିକ ସ୍ତର ଓ ସମାପ୍ତି ସ୍ତର । ଏ ତିନିଟିଯାକ ସ୍ତରରେ ଗଦ୍ୟ ଅଧ୍ୟୟନ ହିଁ ମୁଖ୍ୟତଃ ପ୍ରାଧାନ୍ୟ ଲାଭ କରିଛି ।

ପ୍ରାପ୍ତବୟସ୍କ ଶିକ୍ଷାର୍ଥୀମାନେ ପ୍ରାଥମିକ ସ୍ତରରେ ଭାଷା-ବିଜ୍ଞାନର

ନିୟମ ଅନୁଯାୟୀ 'ଶୁଣିବା, କହିବା, ପଢ଼ିବା ଓ ଲେଖିବା' ଏହି କ୍ରମରେ ଶିକ୍ଷା ପାଆନ୍ତି । ପ୍ରାଥମିକ ସ୍ତରରେ ଅନୁମୋଦିତ ପାଠ ଭାବରେ ସେମାନଙ୍କୁ ଦୈନନ୍ଦିନ ଜୀବନର ଘଟଣାବଳୀକୁ ବାସ୍ତବ କଥୋପକଥନ ମାଧ୍ୟମରେ ପରିଚିତ କରାଇ ସେ ସବୁକୁ ଅନୁକରଣ ଓ ଅଭ୍ୟାସ କରିବାକୁ ସାହାଯ୍ୟ କରାଯାଏ । ପ୍ରଥମେ ଭାଷାର ମୌଳିକ ଧ୍ୱନିଗୁଡ଼ିକ ପ୍ରତି ସେମାନଙ୍କୁ ପରିଚିତ କରାଇ ସେଇ ଧ୍ୱନିକୁ ନିର୍ଭୁଲ ଭାବରେ ଉଚ୍ଚାରଣ କରିବାକୁ ଅଭ୍ୟାସ କରାଇବାକୁ ପଡ଼େ । ଏଇ ସ୍ତରରେ 'ଶୁଣିବା ଓ କହିବା' ପ୍ରତି ଅଧିକ ପ୍ରାଧାନ୍ୟ ଦିଆଯାଏ, କାରଣ ଶିକ୍ଷାର୍ଥୀମାନେ କଥାବାର୍ତ୍ତା ମାଧ୍ୟମରେ ହିଁ ଭାଷାର ପ୍ରକୃତ ପ୍ରୟୋଗକୁ ଅନୁକରଣ କରି ପ୍ରୟୋଗ କରିବାକୁ ଶିଖନ୍ତି । ଏଇ ସମୟରେ ନିର୍ଭୁଲ ଧ୍ୱନି ଉଚ୍ଚାରଣ କରିବା ସଙ୍ଗେ ସଙ୍ଗେ ଏକ ନିର୍ଦ୍ଦିଷ୍ଟ ପରିସ୍ଥିତିରେ କେତେକ ନିର୍ଦ୍ଦିଷ୍ଟ ଶବ୍ଦାବଳୀର ବ୍ୟବହାର ଓ ବାକ୍ୟ ବ୍ୟବହାରକୁ ମଧ୍ୟ ସେମାନେ ଜାଣନ୍ତି ।

ଅନୁମୋଦିତ ପାଠରେ ଅନ୍ତର୍ଭୁକ୍ତ କରାଯାଇଥିବା ବିଷୟଗୁଡ଼ିକ କଥୋପକଥନ ମାଧ୍ୟମରେ ହେଲେ ମଧ୍ୟ ସେଥିରେ ସରଳରୁ ଜଟିଳ ଓ ଜଟିଳତର ବାକ୍ୟ ଗଠନ ପ୍ରତି ଦୃଷ୍ଟି ଦିଆଯାଇ ଆବଶ୍ୟକୀୟ ବିଭିନ୍ନ ପରିବେଶ ପ୍ରସ୍ତୁତ ଓ ନିର୍ବାଚନ କରାହୁଏ । ପ୍ରାପ୍ତବୟସ୍କ ଶିକ୍ଷାର୍ଥୀମାନଙ୍କୁ ନିର୍ଦ୍ଦିଷ୍ଟ ପରିବେଶ ମଧ୍ୟରେ ପ୍ରଚଳିତ ସାଂସ୍କୃତିକ ଆଚରଣ ବିଧି ପ୍ରତି ମଧ୍ୟ ସଚେତନ କରାଇବାକୁ ପଡ଼େ । ଏଥିପାଇଁ ଅନୁମୋଦିତ ପାଠର ପ୍ରଥମ ପାଠକୁ ଉଦାହରଣ ସ୍ୱରୂପ ଏଠାରେ ଉଲ୍ଲେଖ କରାଯାଉଛି :

## ପ୍ରଥମ ପାଠ

(ଶିକ୍ଷାର୍ଥୀ ଓ ଅଧ୍ୟାପକଙ୍କ ମଧ୍ୟରେ ପରିଚୟ)

ରମେଶ ଆଜ୍ଞା ନମସ୍କାର ।

ଅଧ୍ୟାପକ—ନମସ୍କାର ।

ଆପଣଙ୍କ ନାଁ କ'ଣ ?

ଆପଣ କ'ଣ ଜଣେ ଶିକ୍ଷକ ?

ରମେଶ--ହଁ, ମୁଁ ଜଣେ ଶିକ୍ଷକ ?

ମୋ ନାଁ ରମେଶ ଶର୍ମା ।

ଅଧ୍ୟାପକ—ଆପଣଙ୍କ ଘର କୋଉଁଠି ?

ରମେଶ—ମୋ' ଘର ଗୌହାଟୀରେ ।

ଅଧ୍ୟାପକ—ଆଚ୍ଛା, ଗୌହାଟୀ କ'ଣ ଖୁବ୍ ଭଲ ସହର ?

ରମେଶ—ହଁ, ଗୌହାଟୀ ଖୁବ୍ ଭଲ ସହର ।

ଆଚ୍ଛା, ଭୁବନେଶ୍ୱର କ'ଣ ଓଡ଼ଶାର ରାଜଧାନୀ ?

**ଅଧ୍ୟାପକ—ହଁ ଭୁବନେଶ୍ୱର ଓଡ଼ଶାର ରାଜଧାନୀ ।**

**ଭୁବନେଶ୍ୱର ବି ଭାରି ଭଲ ସହର ।**

ରମେଶ—ସାର୍, ଆପଣଙ୍କ ଘର କୋଉଠି ?

ଅଧ୍ୟାପକ—ମୋ' ଘର ଏଇ ଭୁବନେଶ୍ୱରରେ ।

ମୁଁ ଭୁବନେଶ୍ୱରର ବାସିନ୍ଦା ।

ଏଇ ପ୍ରଥମ ପାଠରେ ସର୍ବମୋଟ ୧୫ ଟି ମୌଳିକ ବାକ୍ୟ ବ୍ୟବହାର କରଯାଇଛି ଓ ୬୭ଟି ନୂଆ ଶବ୍ଦର ବ୍ୟବହାର ହୋଇଛି । ଏହାଛଡ଼ା ବ୍ୟବହାର କରଯାଇଥିବା ବାକ୍ୟଗଠନମୂଳକ ବ୍ୟବହାରିକ ବ୍ୟାକରଣ ନୋଟ ଦିଆଯିବା ସଙ୍ଗେ ସଙ୍ଗେ ଏହାକୁ ଯଥାସମ୍ଭବ ସରଳ ଓ ସୀମିତ ରଖାଯାଇଛି । ତେଣୁ 'ନମସ୍କାର' ପରି ଗୋଟିଏ ଶବ୍ଦର ବାକ୍ୟ ଠାରୁ ଆରମ୍ଭକରି ଖୁବ୍ ବେଶୀରେ ୬ଟି ଶବ୍ଦ ବ୍ୟବହାରର ବାକ୍ୟ ପ୍ରଥମ ପାଠରେ ଦିଆଯାଇଛି । ଏହି ପାଠରେ ଶିକ୍ଷାର୍ଥୀ ଓ ଅଧ୍ୟାପକଙ୍କ ମଧ୍ୟରେ ପରିଚୟ ହେବା ଆଳରେ ପ୍ରାପ୍ତବୟସ୍କ ଶିକ୍ଷାର୍ଥୀମାନଙ୍କୁ ପ୍ରଚଳିତ ଛାତ୍ର-ଶିକ୍ଷକ ଆଚରଣ ବିଧି ପ୍ରତି ମଧ୍ୟ ସଚେତନ କରାଇ ଦିଆଯାଇଛି । କାରଣ ଶିକ୍ଷାର୍ଥୀମାନେ ଠିକ୍ ଛାତ୍ର କହିଲେ ସାଧାରଣ ଭାବରେ ଆମ ଦେଶରେ ଯାହା ବୁଝାଯାଏ, ସେମାନେ ତାହା ନୁହନ୍ତି । ତେଣୁ ଶିକ୍ଷାର୍ଥୀମାନଙ୍କୁ 'ଆପଣ' କହିବାରେ ତାତ୍ପର୍ଯ୍ୟ ରହିଛି । ପୁଣି ଶିକ୍ଷାର୍ଥୀମାନଙ୍କୁ ଏଇ ପ୍ରଥମ ପାଠରେହିଁ ଶବ୍ଦ ବ୍ୟବହାର, ବାକ୍ୟଗଠନ ଓ ପ୍ରୟୋଗ ବ୍ୟବହାର ଏବଂ ପ୍ରଚଳିତ ଆଚରଣର ନିୟମ ଜାଣି ସେ ସବୁକୁ ବାରମ୍ବାର ଅଭ୍ୟାସ କରିବାକୁ ନିର୍ଦ୍ଦେଶ ଦିଆଯାଏ । ଏହା ସହିତ ସେମାନଙ୍କୁ ପ୍ରତି ପାଠରେ ଦିଆଯାଉଥିବା ଅଭ୍ୟାସମୂଳକପ୍ରଶ୍ନୋତ୍ତର ମଧ୍ୟ କରିବାକୁ ପଡ଼ଥାଏ । ଅନୁମୋଦିତ ପାଠ୍ୟକ୍ରମର ସବୁ ପାଠରେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଏଇ ନିୟମକୁ ଅନୁସରଣ କରଯାଇ କ୍ରମେ ଅଧିକ ଜଟିଳତର ବାକ୍ୟ

ବ୍ୟବହାର ଓ ଘଟଣା ବର୍ଣ୍ଣନ ମଧ୍ୟକୁ ନିଆଯାଏ । ତେଣୁ ପ୍ରାଥମିକ ସ୍ତରର ଏ ଅନୁମୋଦିତ ପାଠ କେବଳ ଦ୍ୱିତୀୟ ଭାଷା-ଶିକ୍ଷାର୍ଥୀମାନଙ୍କ ଅଭାବ ଓ ଆବଶ୍ୟକତାକୁ ବିଷୟକୁ ନେଇ ପ୍ରସ୍ତୁତ କରଯାଇଛି । ଏହାଦ୍ୱାର ପ୍ରାପ୍ତ-ବୟସ୍କ ଶିକ୍ଷାର୍ଥୀମାନଙ୍କର ଅଧ୍ୟୟନ ପରିମିତ ହେବା ସଙ୍ଗେ ସଙ୍ଗେ ଅଧ୍ୟୟନ ସହଜ ଓ ମନୋଗ୍ରାହୀ ହୁଏ ।

ଏହି ସ୍ତରରେ 'ପଢ଼ିବା ଓ ଲେଖିବା' ପାଇଁ ଅଧିକ ସମୟ ଓ ଅଧିକ ପରିଶ୍ରମ ଆବଶ୍ୟକ ହେଉଥିବାରୁ ଏବଂ ଶିକ୍ଷାର୍ଥୀମାନଙ୍କର ମାତୃଭାଷାର ପ୍ରଭାବ ପୂର୍ଣ୍ଣମାତ୍ରାରେ ସେମାନଙ୍କ ଉପରେ ପଡ଼ୁଥିବାରୁ ଏ ଦୁଇଟିଯାକ ପଦ୍ଧତିକୁ ଅତିବେଶୀ ପ୍ରାଧାନ୍ୟ ଦିଆଯାଏ ନାହିଁ । ପୁଣି ଶିକ୍ଷାର୍ଥୀମାନଙ୍କ ମଧ୍ୟରେ ସମଗୋତ୍ରୀ ଭାଷାର ଶିକ୍ଷାର୍ଥୀ ଓ ଅସମଗୋତ୍ରୀ ଭାଷାର ଶିକ୍ଷାର୍ଥୀମାନେ ଥିବାରୁ ଉଭୟଙ୍କ ପ୍ରତି ଆବଶ୍ୟକୀୟ ଦୃଷ୍ଟି ଦେବାକୁ ପଡେ । ଶିକ୍ଷାର୍ଥୀମାନଙ୍କ ପାଇଁ ପ୍ରାଥମିକ ସ୍ତର ହିଁ ସବୁଠାରୁ ଗୁରୁତ୍ୱ-ପୂର୍ଣ୍ଣ । ଏତିକିବେଳେ ସେମାନେ ନିର୍ଭୁଲ ଉଚ୍ଚାରଣ ଶୁଣିବାକୁ ଓ କହିବାକୁ ଶିଖନ୍ତି ଏବଂ ବାକ୍ୟଗଠନ ଓ ପ୍ରୟୋଗକୁ ମଧ୍ୟ ଜାଣନ୍ତି । ସେମାନଙ୍କୁ ଭାଷାର ଶବ୍ଦାବଳୀକୁ ମଧ୍ୟ ଆୟତ୍ତ କରିବାକୁ ପଡେ । ଏ ସବୁ କରଯାଏ ମୁଖ୍ୟତଃ ବାରମ୍ବାର ଅଭ୍ୟାସ ଦ୍ୱାର । ତେଣୁ ଅଭ୍ୟାସ ବା ଡ୍ରିଲ କରିବାକୁ ମଧ୍ୟ ଏଇ ସ୍ତରରେ ଅଧିକ ଦୃଷ୍ଟି ଦିଆଯାଏ । ପ୍ରାଥମିକ ସ୍ତର ପାଠ୍ୟକ୍ରମର ଶେଷବେଳକୁ ଶିକ୍ଷାର୍ଥୀମାନେ ଆୟତ୍ତ କରିଥିବା ଭାଷାରେ ପରସ୍ପର ମଧ୍ୟରେ କଥାବାର୍ତ୍ତା କରିବାକୁ ସକ୍ଷମ ହୁଅନ୍ତି ଓ ସ୍ଥାନୀୟ ଲୋକମାନଙ୍କ ସହିତ ନିର୍ଦ୍ଦିଷ୍ଟ ପରିବେଶ ମଧ୍ୟରେ ସୀମିତ ଭାଷାଜ୍ଞାନ ମଧ୍ୟରେ ଭାଷା-ବିନିମୟ କରିବାକୁ ସକ୍ଷମ ହୁଅନ୍ତି । ଏହା ସହିତ ସେମାନେ କିଛି ପରି-ମାଣରେ ପଢ଼ିବାକୁ ଓ ଲେଖିବାକୁ ମଧ୍ୟ ସକ୍ଷମ ହୋଇଥାନ୍ତି । ଏଇ ପଢ଼ିବା ଓ ଲେଖିବା ପାଇଁ ଭାଷା ବିଜ୍ଞାନର ନିୟମକୁ ପ୍ରବର୍ତ୍ତନ କରି ଶିକ୍ଷାର୍ଥୀମାନଙ୍କୁ ଉତ୍ସାହିତ କରିବାକୁ ପଡ଼ଥାଏ ।

ପ୍ରାଥମିକ ସ୍ତର ପରେ ମାଧ୍ୟମିକ ସ୍ତର ଆରମ୍ଭ ହୁଏ । କିନ୍ତୁ ମାଧ୍ୟ-ମିକ ସ୍ତରକୁ ସମାପ୍ତି ସ୍ତରର ଅନୁପୂରକ ବୋଲି କୁହାଯାଇପାରେ । କାରଣ ଶିକ୍ଷାର୍ଥୀମାନେ ମାଧ୍ୟମିକ ସ୍ତରରେ ଯେଉଁ ଶିକ୍ଷା ନିୟନ୍ତ୍ରିତ ଓ ସୀମିତ ପରିମାଣରେ ପାଇଥାନ୍ତି, ସେଇ ଶିକ୍ଷାକୁ ଅଧିକ ମୁକ୍ତ ଭାବରେ ଓ ଅଧିକ ଦକ୍ଷତାର ସହିତ ସମାପ୍ତି ସ୍ତରରେ ଅଧ୍ୟୟନ ଓ ପ୍ରୟୋଗ କରନ୍ତି ।

ମାଧ୍ୟମିକ ସ୍ତରରେ ଶିକ୍ଷାର୍ଥୀମାନେ ସୀମିତ ପରିବେଶ ମଧ୍ୟରେ କ୍ଷୁଦ୍ର ରଚନାଠାରୁ ଆରମ୍ଭ କରି ଅତି କ୍ଷୁଦ୍ର ଗଳ୍ପ, ସାରାଂଶ ରଚନା, ବର୍ଣ୍ଣନାଧର୍ମୀ ଜୀବନୀମୂଳକ ରଚନା, ବିଜ୍ଞାନ ଓ ଖେଳ, ସାଂସ୍କୃତିକ ରଚନାବଳୀ ଓ ପତ୍ରଲିଖନ ପ୍ରଭୃତିକୁ ଶିଖନ୍ତି । ପ୍ରାଥମିକ ସ୍ତରରେ ଅଧ୍ୟୟନ କରିଥିବା ବାକ୍ୟ ବା Structure ରେ ବିଷୟବସ୍ତୁକୁ (Contents) କିଛି ପରିମାଣରେ ପ୍ରୟୋଗ କରି ରଚନାକୁ ସ୍ୱାଭାବିକ ଭାବରେ ପ୍ରକାଶ କରିବା ପାଇଁ ଉଦ୍ୟମ କରନ୍ତି । । ଶିକ୍ଷାର୍ଥୀମାନେ ପ୍ରାପ୍ତବୟସ୍କ ହୋଇଥିବାରୁ ଓ ସେମାନଙ୍କର ଉପଲବ୍ଧି କରିବାର ଓ ପ୍ରକାଶ କରି ପାରିବାର କ୍ଷମତା ଅଧିକ ହୋଇଥିବାରୁ ଏହି ଦୁଇଟି ସୁବିଧା ସେମାନେ ଶିଖୁଥିବା ଦ୍ୱିତୀୟ ଭାଷା ପ୍ରକାଶରେ ସେମାନଙ୍କୁ ସାହାଯ୍ୟ କରେ । ବିଭିନ୍ନ ପ୍ରକାର ସହଜ ବିଷୟବସ୍ତୁରେ ବିଭିନ୍ନ ପ୍ରକାର ଭାଷା ବ୍ୟବହାରପ୍ରତି ମଧ୍ୟ ସେମାନଙ୍କୁ ସଚେତନ କରାଯାଏ । ତେଣୁ ମାଧ୍ୟମିକ ସ୍ତରର ଅନୁମୋଦିତ ପାଠରେ ଅଭ୍ୟାସମୂଳକପ୍ରଶ୍ନୋତ୍ତର କରିବାପ୍ରତି ଅଧିକ ଦୃଷ୍ଟି ଦିଆଯାଏ । ମାଧ୍ୟମିକ ସ୍ତରରେ ଅନୁମୋଦିତ ପାଠର ବିଷୟବସ୍ତୁ ସବୁ ଲେଖାଯାଇଥିବା ବିଭିନ୍ନ ଲେଖକମାନଙ୍କର ବିଷୟରୁ ନିର୍ବାଚିତ ହୁଏ ଓ କିଛି ବିଷୟ ମଧ୍ୟ ସେମାନଙ୍କ ପାଇଁ ଆବଶ୍ୟକତା ଅନୁସାରେ ଲେଖାଯାଇଥାଏ । ବଛା ଯାଇଥିବା ପ୍ରତି ବିଷୟ ଛୋଟ ହେବା ସଙ୍ଗେ ସଙ୍ଗେ ବିଷୟରେ ବ୍ୟବହୃତ ଶବ୍ଦ, ବାକ୍ୟ ଓ ବ୍ୟାକରଣଗତ ପ୍ରୟୋଗକୁ ନିୟନ୍ତ୍ରିତ ଓ କ୍ରମବିଭକ୍ତ କରାଯାଏ । ବିଭିନ୍ନ ସାଂସ୍କୃତିକ ପର୍ବପର୍ବାଣୀକୁ ମଧ୍ୟ ବିଷୟବସ୍ତୁର ଅନ୍ତର୍ଭୁକ୍ତ କରିବାକୁ ପଡେ । ଉଦାହରଣ ସ୍ୱରୂପ ମାଧ୍ୟମିକ ସ୍ତରର ଅନୁମୋଦିତ ପାଠରେ ଦିଆଯାଇଥିବା 'ଓଡ଼ିଶା' ନାମକ ବିଷୟରୁ ନିମ୍ନ-ଲିଖିତ ପରିଚ୍ଛେଦଟିକୁ ଉଲ୍ଲେଖ କରାଯାଇପାରେ :

'ଓଡ଼ିଶାର ଅଧିକାଂଶ ଲୋକ ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟିୟାନ ସଂପ୍ରଦାୟର ଲୋକସଂଖ୍ୟା ହିନ୍ଦୁଙ୍କ ସଂଖ୍ୟା ତୁଳନାରେ ଅତି କମ୍ । ଭିନ୍ନ ଭିନ୍ନ ଧର୍ମ ଓ ଗୋଷ୍ଠୀର ଲୋକେ ଏ ରାଜ୍ୟରେ ବାସ କରୁଥିବାରୁ ଏଠାରେ ବର୍ଷସାରା ନାନା ପର୍ବପର୍ବାଣୀ ଲାଗି ରହିଥାଏ । ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ ସବୁ ସଂପ୍ରଦାୟର ପର୍ବପର୍ବାଣୀ ଦେଖିବାକୁ ମିଳେ । ଏହାଛଡା ଆଦିବାସୀମାନଙ୍କର ଅଲଗା ଢଙ୍ଗର ମେଳା ମଉଚ୍ଛବ ହୁଏ । ସହର ବଜାରରେ ତ ବିଭିନ୍ନ ରାଜ୍ୟରୁ ଲୋକେ ଆସି ରହିଲେଣି । ତେଣୁ ସେ ସବୁ ଜାଗାରେ ଭାରତର ଅନ୍ୟ ରାଜ୍ୟରେ ହେଉଥିବା ପର୍ବପର୍ବାଣୀ ଏବେ

ଦେଖିବାକୁ ମିଳୁଛି । ଓଡ଼ିଶାର ପର୍ବପର୍ବାଣୀଗୁଡ଼ିକ ମଧ୍ୟରେ ରଥଯାତ୍ରା ଦଶହରା, ଶିବରାତ୍ରୀ, ଗଣେଶପୂଜା, ସରସ୍ୱତୀ ପୂଜା, ରଜ, ଦୋଳ, ମହରମ, ଇଦ୍, ଖ୍ରୀଷ୍ଟମାସ, ଗୁଡ୍‌ଫ୍ରାଇଡ଼େ ପ୍ରଭୃତି ପ୍ରଧାନ ।

ଏହି ପରିଚ୍ଛେଦରେ ବ୍ୟବହୃତ ବାକ୍ୟସବୁ ସରଳ ଓ ଛୋଟ ଛୋଟ । ଜଟିଳ ବାକ୍ୟର ବ୍ୟବହାର ନାହିଁ । ବର୍ଣ୍ଣନାରେ ଏକ ପ୍ରକାର ସୁନ୍ଦର ଧାରାବାହିକତା ରକ୍ଷା ହୋଇଛି ଓ ଏକ ତୁଳନାତ୍ମକ ଶୈଳୀ ମଧ୍ୟରେ ରାଜ୍ୟର ସାଂସ୍କୃତିକ ପରିବେଶଟିକୁ ଉପସ୍ଥାପନ କରାଯାଇଛି । ପ୍ରାଥମିକ ସ୍ତର ଓ ମାଧ୍ୟମିକ ସ୍ତରର ଅନୁମୋଦିତ ପାଠର ସବୁଠାରୁ ବଡ଼କଥା ହେଲା ଯେ, ବିଷୟବସ୍ତୁର କ୍ରମବିଭକ୍ତି ବେଳେ ବିଷୟ ମଧ୍ୟରେ ଦିଆଯାଇ-ଥିବା ବାକ୍ୟଗୁଡ଼ିକ ଯେପରି ବ୍ୟାବହାରିକ ବ୍ୟାକରଣ ଅନୁସାରେ ପରସ୍ପର ଉପରେ ନିର୍ଭର କରନ୍ତି ପ୍ରତି ବିଷୟର ନିର୍ବାଚନରେ ମଧ୍ୟ ସେହିପରି ବ୍ୟାକରଣଗତ କ୍ରମପ୍ରତି ଲକ୍ଷ୍ୟ ରଖିବାକୁ ହୁଏ । ପ୍ରତି ବିଷୟରେ ଦିଆଯାଇ-ଥିବା ଅଭ୍ୟାସମୂଳକ-ପ୍ରଶ୍ନୋତ୍ତର ପ୍ରସ୍ତୁତ କରିବା ସମୟରେ ଶିକ୍ଷାର୍ଥୀ-ମାନଙ୍କଠାରୁ ଯେପରି ଅଧିକ ନିର୍ଭୁଲ ଭାଷା ଆଦାୟ କରାଯାଇପାରିବ ସେଥିପ୍ରତି ଅଧିକ ଦୃଷ୍ଟି ଦେବାକୁ ହୁଏ । ଏଥିପାଇଁ ଦୁଇ ପ୍ରକାର ପ୍ରଶ୍ନୋତ୍ତର ସାଧାରଣତଃ ସେମାନଙ୍କୁ କରିବାକୁ ହୋଇଥାଏ । ଗୋଟିଏ ପ୍ରକାର ପ୍ରଶ୍ନର ଉତ୍ତର ଗୋଟିଏ ବା ଦୁଇଟି ବାକ୍ୟରେ ହେଉଥିବାବେଳେ ଅନ୍ୟପ୍ରକାରର ପ୍ରଶ୍ନୋତ୍ତର ବର୍ଣ୍ଣନାତ୍ମକ ଭାବରେ ଏକାଧିକ ବାକ୍ୟରେ ଦେବାପାଇଁ ପଡ଼େ ।

ଏହାଛଡ଼ା ଏହି ସ୍ତରରେ ପଢ଼ିବା ଓ ଲେଖିବାପ୍ରତି ଅଧିକ ଦୃଷ୍ଟି ଦିଆଯାଏ ଏବଂ ସେଇ କାରଣରୁ ଖବର କାଗଜ ପଢ଼ିବା ପାଇଁ ଓ ଅତିରିକ୍ତ ପଠନ ଅଭ୍ୟାସ ପାଇଁ ଏବଂ ସେମାନଙ୍କ ଭାଷାଜ୍ଞାନର କ୍ରମବିକାଶ ପାଇଁ ସେମାନଙ୍କୁ ଛୋଟ ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ମଧ୍ୟ ପଢ଼ିବାକୁ ଦିଆଯାଏ । କିନ୍ତୁ କହିବା ଅଭ୍ୟାସ ପାଇଁ ଏ ସମୟରେ ଉତ୍ସାହିତ କରିବାକୁ ବିଭିନ୍ନ ପ୍ରକାର ବିଷୟବସ୍ତୁ ଉପରେ ମୌଖିକ ଆଲୋଚନା କରିବାକୁ ସେମାନେ ସୁଯୋଗ ପାଆନ୍ତି । ଅନୁମୋଦିତ ପାଠରେ ଏହି ସ୍ତରରେ କେତୋଟି ପଦ୍ୟ ଦିଆ ହୋଇଥିଲେ ମଧ୍ୟ ଗଦ୍ୟର ଅଧ୍ୟୟନ ହିଁ ଅଧିକ ପ୍ରାଧାନ୍ୟ ପାଏ ।

ପ୍ରାଥମିକ ସ୍ତରର ବାକ୍ୟ ଗଠନ, ବ୍ୟବହାର ଓ ମାଧ୍ୟମିକ ସ୍ତରର

ବିଷୟବସ୍ତୁ ରଚନା କ୍ଷମତାକୁ ଏକତ୍ର କରି ସମାପ୍ତି ସ୍ତରରେ ଶିକ୍ଷାର୍ଥୀ-ମାନଙ୍କ ପାଇଁ ସମାପ୍ତି ସ୍ତରର ଅନୁମୋଦିତ ପାଠରେ ଅଧିକ ଜଟିଳ ବିଷୟବସ୍ତୁମାନ ବିଶିଷ୍ଟ ଲେଖକମାନଙ୍କ ଲେଖାରୁ ନିର୍ବାଚନ କରି ଦିଆ-ଯାଏ । ତେଣୁ ଏହି ସ୍ତରରେ ଶିକ୍ଷାର୍ଥୀମାନଙ୍କୁ ସାମାଜିକ ଓ ସାଂସ୍କୃତିକ ପୃଷ୍ଠଭୂମିରେ ରଚିତ ବିଭିନ୍ନ ଲେଖକମାନଙ୍କର ଲେଖାରେ କ୍ଷୁଦ୍ର ଗଳ୍ପଠାରୁ ଆରମ୍ଭ କରି ପ୍ରବନ୍ଧ, ଜୀବନୀ ଆତ୍ମଜୀବନୀ ଓ ସମାଲୋଚନାମୂଳକ ରଚନା ସବୁ ପଢ଼ିବାକୁ ପଡ଼େ । କେତୋଟି ପଦ୍ୟ ମଧ୍ୟ ସେମାନେ ପଢ଼ନ୍ତି । ଶିକ୍ଷାର୍ଥୀମାନଙ୍କୁ ସମାଲୋଚନାମୂଳକ ଲେଖା ପଢ଼ିବାକୁ ଓ ଲେଖିବାକୁ ଉତ୍ସାହିତ କରାଯିବା ସଙ୍ଗେ ସଙ୍ଗେ ଭାଷାରେ ପ୍ରକାଶିତ ସାହିତ୍ୟର ବିଭିନ୍ନ ଉପାଦାନ; ଯେପରି ବ୍ୟଙ୍ଗାତ୍ମକ, ପରିହାସମୂଳକ, ବର୍ଣ୍ଣନାତ୍ମକ ଓ ସମାଲୋଚନାର ପ୍ରକାରଭେଦକୁ ଲକ୍ଷ୍ୟ କରିବାକୁ ଶିକ୍ଷା ଦିଆଯାଏ । ଏହା ଦ୍ୱାରା ସେମାନଙ୍କର ଉପଲବ୍ଧି କରିପାରିବାର ଶକ୍ତିକୁ ଶକ୍ତିଶାଳୀ କରାଯିବା ସଙ୍ଗେ ସଙ୍ଗେ ସେମାନଙ୍କର ନିଜସ୍ୱ ଦୃଷ୍ଟିଭଙ୍ଗୀର ବିକାଶରେ ସାହାଯ୍ୟ କରାଯାଏ । ବିଶିଷ୍ଟ ଲେଖକମାନଙ୍କର ଲେଖାରେ ଏକ ପ୍ରକାର ଭାବ ପ୍ରକାଶ କରିବାକୁ ବା ଏକ ପ୍ରକାର ସମାଲୋଚନାମୂଳକ ଦୃଷ୍ଟିକୋଣ ପ୍ରକାଶ କରିବାକୁ କିପରି ଲେଖକଙ୍କର ନିଜସ୍ୱ ସ୍ୱତନ୍ତ୍ର ଶୈଳୀ କାମ କରେ ତାହା ମଧ୍ୟ ସୂଚାଇ ଦିଆଯାଏ । ସମାପ୍ତି ସ୍ତରର ଅନୁମୋଦିତ ପାଠ ଓ ସେଥିର ନୋଟ ଏବଂ ଅଭ୍ୟାସମୂଳକ ପ୍ରଶ୍ନୋତ୍ତର ପ୍ରସ୍ତୁତ କରିବା ବେଳେ ଏଥିପାଇଁ ଦୃଷ୍ଟି ଦେବାକୁ ହୁଏ । ତେଣୁ ଏହି ସ୍ତରରେ ଭାଷା-ଶିକ୍ଷାର୍ଥୀମାନେ ଭାଷା ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ସାହିତ୍ୟ ମଧ୍ୟ ଅଧ୍ୟୟନ କରନ୍ତି । ଉଦାହରଣ ସ୍ୱରୂପ ନିମ୍ନଲିଖିତ ତିନିଜଣ ବିଶିଷ୍ଟ ଲେଖକଙ୍କ ଲେଖାରେ ଗଦ୍ୟଶୈଳୀରେ ସମାଲୋଚନା-ମୂଳକ ମନୋଭାବକୁ ଲକ୍ଷ୍ୟ କରାଯାଇ ପାରେ । ନିମ୍ନଲିଖିତ ଉଦ୍ଧୃତାଂଶଗୁଡ଼ିକୁ ସମାପ୍ତି ସ୍ତରର ଅନୁମୋଦିତ ପାଠରେ ଦିଆଯାଇଥିବା ଦୁଇଟି ବିଷୟ, ଶ୍ରୀ ବିନୋଦ କାନୁନ୍‌ଗୋଙ୍କ 'ଆଳାପ' ଓ ଶ୍ରୀ ଭଗବତୀ ଚରଣ ପାଣିଗ୍ରାହୀଙ୍କ 'ଶିକାର' ଗଳ୍ପରୁ ଏବଂ ଶ୍ରୀ ଗୋପୀନାଥ ମହାନ୍ତିଙ୍କ ଲିଖିତ 'ଟଡ଼୍‌ପା' ନାମକ ଅନ୍ୟ ଆଦିବାସୀ ବିଷୟକ କ୍ଷୁଦ୍ର ଗଳ୍ପରୁ ନିଆଯାଇଛି ।

୧ । 'ଆଳାପ'—''ଏଭଳି ଦେଖାଯାଇଛି ଯେ ଜଣେ ଗୁଡ଼ାଏ କହିଲାଣି ଓ ଶେଷକୁ ମନେ ହେବ ସେ କିଛି କହି ନାହିଁ । ଅନ୍ୟମାନଙ୍କ କଥା ଶୁଣିବା ପାଇଁ ଯଦି ତୁମର ଧୈର୍ଯ୍ୟ ନାହିଁ, ତା'ହେଲେ ଜାଣିବାକୁ ହେବ

ଯେ, ତୁମେ ଆଳାପ-ଆଲୋଚନାରୁ ଫେରିଲା ପରେ କିଛି ଶିଖି ନାହଁ।
କହିବା ଢଙ୍ଗଟି କେବଳ ଭଲ ହେଲେ ଚଳିବ ନାହିଁ। ଯାହା କହୁଛି
ସେତକ 'ନିଦା' ହୋଇଥିବା ଦରକାର। ଭଣେ ରହସ୍ୟ କରି କହିଲା
ଭଳି--ଯେଉଁ ଲୋକ ଗୁଡାଏ ଗପି କିଛି କୁହେ ନାହିଁ, ତାକୁ ମୋର ଯେତିକି
ଡର, ବାଘ ଭାଲୁଙ୍କୁ ବି ସେତିକି ଡର ନୁହେଁ।''

୨। 'ଶିକାର'—''ଗୋବିନ୍ଦ ସଦ୍ଦାର ସାମାନ୍ୟ ଲୋକ ନୁହେଁ।
ହାତରେ ତା'ର ଥାଏ ସବୁବେଳେ ବନ୍ଧୁକ। ବାଘ ଭାଲୁଙ୍କ ଅପେକ୍ଷା,
ଲୋକେ ତାକୁ ବେଶୀ ଭୟ କରନ୍ତି। ବାଘ ଭାଲୁଙ୍କ ଅପେକ୍ଷା ସେ
ଲୋକଙ୍କର କ୍ଷତି କରେ ଢେର ବେଶୀ। ତାକୁ ମାରିବା ପାଇଁ ଘନୁଆ କମ୍
ସାହାସ ଓ ବିଚକ୍ଷଣତା ଖର୍ଚ୍ଚ କରି ନାହିଁ।''

୩। ଟଡ୍ପା—'ଏତେ ହସୁଚ ବାବୁ? ଟଡ୍ପା ପରଶୁରାମଙ୍କୁ
ପଚାରିଲା; ଆଜି ସିନା ବୁଢା ହେଲୁ, କେବେ ଧାଂଡା ବେଣ୍ଟ ହୋଇ
ନ ଥିଲୁ କି?' 'ଧାଂଡା ହୋଇଥିଲି ସିନା ଧାଂଡୀ ବେଣ୍ଟ କରି ନାଇଁ, ଆମ
ଆଡେ ଚଳେ ନାଇଁ।'

(ପରଶୁରାମ କହିଲେ)..........

ଟଡ୍ପା ପରଶୁରାମଙ୍କ ମୁହଁକୁ ବଲ ବଲ କରି ଅନାଇଲା, ଟିକିଏ
ରହି କହିଲା, 'ଯେଉଁ ଦେଶରେ ଧାଂଡା ବେଣ୍ଟେ ନାହିଁ, ସେ ଦେଶର
ଲୋକେ ଜନ୍ତୁ କି ମଣିଷ?' ନୃତତ୍ତ୍ୱବିତ୍ ଭରତ ଚମକି ପଡ଼ ଆଗକୁ
ମାଡ଼ଗଲେ, କହିଲେ, 'କାହିଁକି?' ଟଡ୍ପା କହିଲା, 'ଦି ଜଣ କଥାବାର୍ତ୍ତା,
ହସ ଖେଳ; ନାଟ ଗୀତ ହୋଇ ଚିହ୍ନା ଜଣା ହୋଇ ମନ ମାନିଲେ ସିନା
ଘର କରିବେ, ନଇଲେ କେମିତି? ସେଥିପାଇଁ କହିଲି ସେମାନେ ମଣିଷ
ନୁହଁନ୍ତି, ଜନ୍ତୁ। ଚିହ୍ନା ହେବେ ନାଇଁ, ଶରଧା ହେବେ ନାଇଁ, ପୁଣି ଘର
କରିବେ। ହେଇ ସେ ତଳ ଦେଶର ଲୋକେ ଯେମିତି।' ସେ ଅବଜ୍ଞାରେ
ନାକ ଟେକିଲା। ତା'ର ନାକର ନୁଡ୍ ନୁଡ୍ ଫାଶିଆ ତିନୋଟି ଜହ୍ନ
ଆଲୁଅରେ ଚିକ୍ ଚିକ୍ କଲା, କହିଲା 'ଆମେ ସେମିତି ନୋହୁ ଆମେ
ଭଙ୍ଗ୍ରିଆ।''

ଲକ୍ଷ୍ୟ କରଯାଇ ପାରେ ଯେ ଏ ୩ଟି ଯାକ ଉଦ୍ଧୃତାଂଶରେ ବ୍ୟବ-

ହୁତ ଅଧିକାଂଶ ବାକ୍ୟ ସରଳ ଓ ସେଥିରେ କୁହାଯାଉଥିବା କଥାଗୁଡ଼ିକ ସହଜ । କିନ୍ତୁ ଟିକିଏ ତଳେଇ ଦେଖିଲେ ବୁଝିହେବ ଯେ ସରଳ ବାକ୍ୟରେ ପ୍ରକାଶ ପାଉଥିବା ଭାବଗୁଡ଼ିକ କିନ୍ତୁ ଆଦୌ ସରଳ ନୁହଁ, ଖୁବ୍ ଜଟିଳ ଓ ପ୍ରତ୍ୟେକର ପଛରେ ରହିଛି ହୁଏତ ବ୍ୟକ୍ତିକୁ ବା ବ୍ୟକ୍ତିର ଚରିତ୍ରକୁ ବା ଜାତିର ଗୁଣକୁ ସମାଲୋଚନା କରିବାର ମନୋବୃତ୍ତି । ବିନୋଦ କାନୁନ୍‌ଗୋଙ୍କ କଥାରେ ଯେମିତି କାହା ପ୍ରତି ଆକ୍ଷେପ ନ ଥାଇ ଏକ ଅଦ୍ଭୁତ, ପରିହାସମୂଳକ ସମାଲୋଚନା ପ୍ରକାଶ ପାଉଛି, ଭଗବତୀ ପାଣିଗ୍ରାହୀଙ୍କ ଲେଖାରେ ସେମିତି ଉଲ୍ଲେଖିତ ଚରିତ୍ର ପ୍ରତି ଏକ ପ୍ରକାଶ୍ୟ ଭୟ ପ୍ରକାଶ ପାଇ ଚାରିତ୍ରିକ ସମାଲୋଚନା କରଯାଇଛି । କିନ୍ତୁ ଗୋପୀନାଥ ମହାନ୍ତିଙ୍କ ଗଳ୍ପରେ ଦୁଇଜଣଙ୍କ କଥୋପକଥନ ମାଧ୍ୟମରେ ଏକ କୌତୂହଳ ଓ କୌତୁକପୂର୍ଣ୍ଣ ପରିବେଶ ମଧ୍ୟରେ ଗୋଟିଏ ଜାତିର ଗୁଣ ଓ ସାଂସ୍କୃତିକ ପ୍ରଥା ପ୍ରତି ଏକ ପ୍ରଚ୍ଛନ୍ନ ବ୍ୟଙ୍ଗ ପ୍ରକାଶିତ ହୋଇଛି । ତେଣୁ ଏଠାରେ ସବୁଠାରୁ ଉଲ୍ଲେଖଯୋଗ୍ୟ ବିଷୟ ହେଉଛି ଏଇ ଲେଖକମାନଙ୍କର ତିନିଟିଯାକ ଉଦ୍ଧୃତାଂଶରେ, ପୁଣି ଉଲ୍ଲେଖ କରଯାଇଥିବା କଥାରେ ତିନିଜଣଯାକ ଲେଖକ ମଣିଷର ସହଜାତ ପ୍ରବୃତ୍ତିକୁ ବାଘ, ଭାଲୁ ବା ଜନ୍ତୁ ପରି ଇତର ପ୍ରାଣୀ ସହିତ ତୁଳନା କରି ବ୍ୟଙ୍ଗ କରିଥିଲେ ବି ତିନିଙ୍କ ଲେଖାରେ ପ୍ରତ୍ୟେକଙ୍କର ପ୍ରକାଶ ଶୈଳୀ ସ୍ୱତନ୍ତ୍ର, ଦୃଷ୍ଟିଭଙ୍ଗୀ ସ୍ୱତନ୍ତ୍ର ଓ ସେଇ ବାକ୍ୟଗୁଡ଼ିକ ମାଧ୍ୟମରେ ପ୍ରକାଶ ପାଉଥିବା କଥାର ଅର୍ଥ ମଧ୍ୟ ପରସ୍ପରଠାରୁ ଭିନ୍ନ । ମୂଳ ଉଦ୍ଦେଶ୍ୟ ସମାଲୋଚନା ମାଧ୍ୟମରେ ଚାରିତ୍ରିକ ଓ ସାମାଜିକ ଦୋଷତ୍ରୁଟି ପ୍ରଦର୍ଶନ ହେଲେ ମଧ୍ୟ ସେଇ କଥା କହିବାର ବା ପ୍ରକାଶ କରିବାର ଢଙ୍ଗଟି ପ୍ରତ୍ୟେକଙ୍କର ପ୍ରତ୍ୟେକଙ୍କ ଠାରୁ ପୃଥକ ।

ଲେଖାରେ ବ୍ୟବହୃତ ହୋଇଥିବା ଶବ୍ଦର ବ୍ୟବହାର, ବାକ୍ୟର ଗଠନ, ଭାବ ପ୍ରକାଶ କରିବାର ଢଙ୍ଗ ଓ ସେଥିରେ କୁହାଯାଉଥିବା କଥାରେ ନିହିତ ଥିବା ଚରିତ୍ର ବା ସମାଜ ସଂସ୍କାରମୂଳକ ମନୋଭାବ ଓ ସେଥିପ୍ରତି ସଚେତନତା ସୃଷ୍ଟି କରାଇବା । ପୁଣି ଏଇ ପରିଚ୍ଛେଦଗୁଡ଼ିକୁ ମାଧ୍ୟମିକ ସ୍ତରର ଉଦ୍ଧୃତ ବିଷୟ ସହିତ ଦେଖିଲେ ଜଣାଯିବ ଯେ ଦୁଇଟି ତୁଳନାତ୍ମକ ବର୍ଣ୍ଣନାରେ କେତେ ପାର୍ଥକ୍ୟ । ମାଧ୍ୟମିକ ସ୍ତରର ଉଦ୍ଧୃତାଂଶରେ ତୁଳନା ପ୍ରାୟତଃ ସରଳ କିନ୍ତୁ ଉପରୋକ୍ତ ଉଦ୍ଧୃତାଂଶରେ ମଣିଷକୁ ଜନ୍ତୁ ସହିତ ତୁଳନା କରଯାଇ ଏକ ଜଟିଳ ଭାବକୁ ପ୍ରକାଶ

କରଯାଉଛି । ଏହିଠାରେ ହିଁ ମାଧ୍ୟମିକ ସ୍ତର ଓ ସମାପ୍ତି ସ୍ତର ମଧ୍ୟରେ ପାର୍ଥକ୍ୟ ।

ଏସବୁ ପ୍ରତି ଶିକ୍ଷାର୍ଥୀମାନଙ୍କୁ ସଚେତନ କରାଇବାକୁ ହୁଏ । ତେଣୁ ଏକ ବାକ୍ୟରେ କହିବାକୁ ଗଲେ ସମାପ୍ତି ସ୍ତରରେ ସାହିତ୍ୟରେ ଭାଷାର ବିଭିନ୍ନ ପ୍ରକାର ପ୍ରୟୋଗକୁ ଶିକ୍ଷାର୍ଥୀମାନେ ଅଧ୍ୟୟନ କରନ୍ତି । ଏହାଛଡ଼ା ଉପନ୍ୟାସ, ନାଟକ ଓ ସାହିତ୍ୟର ଅନ୍ୟ ସବୁ ବିଭାଗକୁ ପଢ଼ିବାକୁ ଓ ସାହିତ୍ୟର ଏବଂ ଭାଷାର ଇତିହାସ ସହିତ ରାଜ୍ୟର ଇତିହାସ ଓ ସଂସ୍କୃତିକୁ ଜାଣିବାକୁ ଏଇ ସମାପ୍ତି ସ୍ତରରେ ହିଁ ବ୍ୟବସ୍ଥା କରଯାଇଛି । ଶିକ୍ଷାର୍ଥୀ-ମାନେ ତେଣୁ ଏଇ ସମୟରେ ଅଧ୍ୟୟନ କରୁଥିବା ଭାଷାରେ ନିଜ ଦକ୍ଷତା ଅନୁସାରେ ମୌଳିକ ଲେଖା ଲେଖିବାକୁ ବା ନିଜ ଭାଷାରୁ ଶିଖୁଥିବା ଭାଷାକୁ ଅନୁବାଦ କରିବାକୁ ସକ୍ଷମ ହୋଇଥାନ୍ତି ।

ଓଡ଼ିଆକୁ ଦ୍ୱିତୀୟ ଭାଷା ଭାବରେ ଅଧ୍ୟୟନ କରିବା ପାଇଁ ଏଗୁଡ଼କ ତ ହେଲା ପ୍ରସ୍ତାବିତ, ପରୀକ୍ଷାମୂଳକ ବ୍ୟବସ୍ଥା । ବର୍ତ୍ତମାନ ପ୍ରଶ୍ନ କରଯାଇ ପାରେ ଓଡ଼ିଆକୁ ଦ୍ୱିତୀୟ ଭାଷା ବୋଲି କୁହାଯିବ କାହିଁକି ? କୁହାଯାଇଛି ଯେ ଯେଉଁଠି ଭାଷା ଶିକ୍ଷା ପାଇଁ ସ୍ଥାନୀୟ ପରିବେଶ ରହିଛି ସେଠାରେ ଅଧ୍ୟୟନ କରଯାଉଥିବା ଭାଷାକୁ ଦ୍ୱିତୀୟ ଭାଷା ବୋଲି କୁହାଯିବ ଏବଂ ଯେଉଁଠାରେ ଅଧ୍ୟୟନ ପାଇଁ ପରିବେଶ ନାହିଁ ସେଠାରେ ଭାଷା ଅଧ୍ୟୟନକୁ ବିଦେଶୀ ଭାଷା ଅଧ୍ୟୟନ ବୋଲି କୁହାଯିବ । କିନ୍ତୁ ଏଠାରେ ଗୋଟିଏ କଥା ପ୍ରତି ଦୃଷ୍ଟି ଦେବାକୁ ହେବ ଯେ ଶିକ୍ଷାର୍ଥୀମାନଙ୍କ ମଧ୍ୟରେ ସମଗୋତ୍ରୀ ଓ ଅସମଗୋତ୍ରୀ ଭାଷା ଗୋଷ୍ଠୀର ଶିକ୍ଷାର୍ଥୀ ଥାଆନ୍ତି । ସମଗୋତ୍ରୀ ଭାଷାଗୋଷ୍ଠୀର ଶିକ୍ଷାର୍ଥୀଙ୍କ ପାଇଁ ପରିବେଶ ଯଥେଷ୍ଟ ସାହାଯ୍ୟ କଲେ ମଧ୍ୟ ଅସମଗୋତ୍ରୀ ଭାଷା ଗୋଷ୍ଠୀର ଶିକ୍ଷାର୍ଥୀଙ୍କ ପାଇଁ ପରିବେଶର ସାହାଯ୍ୟ ଅପେକ୍ଷାକୃତ କମ୍ । ସେହି ଦୃଷ୍ଟିରୁ ଦେଶ ବାହାରୁ ବିଦେଶୀମାନେ ଭାଷା ଶିକ୍ଷା କରିବାକୁ ଆସିଲେ ପରିବେଶ ଥିଲେ ମଧ୍ୟ ଯେପରି ଶୋଚନୀୟ ଅବସ୍ଥାର ସମ୍ମୁଖୀନ ହୁଅନ୍ତି, ଦେଶ ଭିତରେ ଥାଇ ସଂପୂର୍ଣ୍ଣ ଭାବରେ ଏକ ନୂତନ ପରିବେଶରୁ ଆସିଥିବା ଶିକ୍ଷାର୍ଥୀମାନେ ମଧ୍ୟ ସେହିପରି ଅବସ୍ଥା ଭୋଗ କରନ୍ତି । ଏହିପରି ଅବସ୍ଥାର ସମ୍ମୁଖୀନ ହେଉଥିବା ଶିକ୍ଷାର୍ଥୀମାନଙ୍କ ମଧ୍ୟରେ ଓଡ଼ିଆକୁ ଦ୍ୱିତୀୟ ଭାଷା ଭାବରେ ଅଧ୍ୟୟନ କରିବାକୁ ଆସୁଥିବା ଦକ୍ଷିଣ ଭାରତୀୟ ଭାଷାଗୋଷ୍ଠୀର ଶିକ୍ଷାର୍ଥୀମାନଙ୍କୁ ଉଦାହରଣ ସ୍ୱରୂପ ଉଲ୍ଲେଖ କରଯାଇ ପାରେ ।

ଅନ୍ୟ ପକ୍ଷରେ ଭଷାରେ ସମତା ଥାଉ ବା ନଥାଉ ଶିକ୍ଷାର୍ଥୀମାନେ ଅଧ୍ୟୟନ ସମୟରେ କେତେକ ସାଧାରଣ ଅସୁବିଧାର ସମ୍ମୁଖୀନ ହୋଇଥାନ୍ତି । ଶିକ୍ଷାର୍ଥୀମାନେ ପ୍ରାପ୍ତବୟସ୍କ ହୋଇଥିବାରୁ ସେମାନଙ୍କର ପ୍ରାପ୍ତବୟସ୍କ ଅବସ୍ଥା ମଧ୍ୟ ସେମାନଙ୍କ ପାଇଁ ଏକ ପ୍ରଧାନ ଅନ୍ତରାୟ । କାରଣ ଭଷା ଶିଖିବାକୁ ଶିଶୁ ସୁଲଭ ଆଗ୍ରହ ବା ଚଞ୍ଚଳତା ବା ଅଲିଖିତ ସିଲଟପରି ସେମାନଙ୍କର ମନର ଅବସ୍ଥା ନଥାଏ । ଅଧ୍ୟୟନ ସମୟରେ ମାତୃଭଷାର ପ୍ରଭବ ସେମାନଙ୍କ ପାଇଁ ଅନ୍ୟ ଏକ ପ୍ରଧାନ ଅନ୍ତରାୟ । ତା ଛଡ଼ା ଇଂରଜୀ ଭଷାର ପ୍ରଭବ ମଧ୍ୟ ଭାଷା ଅଧ୍ୟୟନ ସମୟରେ କେତେକ ଅସୁବିଧା ସୃଷ୍ଟି କରେ । ଏ ତିନିଟିକୁ ଛାଡ଼ ଧ୍ୱନିକୁ ନିର୍ଭୁଲ ଭାବରେ ଶୁଣିବା ଓ ବିଷୟବସ୍ତୁଗତ ପ୍ରୟୋଗରେ ଏବଂ ବିଷୟବସ୍ତୁର ଉପସ୍ଥାପନାରେ ଶିକ୍ଷାର୍ଥୀମାନଙ୍କର ସାଧାରଣତଃ ଭୁଲ ହୁଏ । ଏ ସବୁକୁ ଅଭ୍ୟାସ କରିବାକୁ ସେମାନଙ୍କ ମାତୃଭାଷାରେ ଅଭ୍ୟସ୍ତ ହୋଇଥିବା ସେମାନଙ୍କର ସ୍ୱର ଓ ଭାଷାତନ୍ତ୍ର ବିରୋଧ କରେ । ପୁଣି ଏକ ନୂତନ ପରିବେଶର ଭାଷା ଓ ସାହିତ୍ୟକୁ ନିଜ ଭାଷା ଓ ସାହିତ୍ୟ ପାଖରେ ସମଭାବରେ ସ୍ଥାପନ କରିବା ମଧ୍ୟ ସେମାନଙ୍କ ପକ୍ଷରେ କଷ୍ଟସାଧ୍ୟ ହୁଏ । ଏହି ସବୁ ଅସୁବିଧା ଓ ବାଧାକୁ ଆଖି ଆଗରେ ରଖି ଓ ଶିକ୍ଷାର୍ଥୀମାନଙ୍କର ସାଧାରଣ ତ୍ରୁଟିଗୁଡ଼କୁ ସଂଶୋଧନ କରି ଓ ତ୍ରୁଟିଗୁଡ଼କ ପ୍ରତି ସେମାନଙ୍କୁ ସଚେତନ କରାଇ ଭାଷା ଶିକ୍ଷା ଦେବାକୁ ପଡ଼େ ।

ମୋଟାମୋଟି ଭାବରେ କହିବାକୁ ଗଲେ ଭାଷା-ଅଧ୍ୟୟନ କହିଲେ ଭାଷାରେ ବ୍ୟକ୍ତ ଭାବ ଓ ଭାବବିନିମୟକୁ ହିଁ ଅଧ୍ୟୟନ କରଯାଏ । ତେଣୁ ଭାଷା ହେଉଛି ପ୍ରତ୍ୟେକଙ୍କର ଭାବବିନିମୟ ପାଇଁ ଆବଶ୍ୟକ ହେଉଥିବା ଭାଷା । କିନ୍ତୁ ଏଇ ଭାବବିନିମୟ ପାଇଁ ଆବଶ୍ୟକ ହେଉଥିବା ଭାଷା ମୁଖ୍ୟତଃ ଗଦ୍ୟଧର୍ମୀ । ତେଣୁ ଭଷାରେ ପଦ୍ୟ ବିଭଗ ଥିଲେ ମଧ୍ୟ ପଦ୍ୟର ଅଧ୍ୟୟନ ପାଇଁ ଗଦ୍ୟ ସହିତ ଆଉ କେତେକ ସ୍ୱତନ୍ତ୍ର ବ୍ୟବସ୍ଥା ଗ୍ରହଣ କରିବାକୁ ପଡୁଥିବାରୁ ଜଣେ ଶିକ୍ଷାର୍ଥୀ ନିଜ ମାତୃଭଷା ବ୍ୟତୀତ ଅନ୍ୟ ଯେ କୌଣସି ଭଷା ଜାଣିଥିଲେ କେବଳ ଗଦ୍ୟ ଆଲୋଚନା କରିବାରେ ସେହି ଭଷାର ପ୍ରୟୋଗ କରି ପାରିବ । ପୁଣି ପଦ୍ୟ ଅଧ୍ୟୟନ ପାଇଁ ଭାଷାରେ ଗଦ୍ୟର ବ୍ୟବହାରକୁ ମଧ୍ୟ ଆୟତ୍ତ କରିବାକୁ ହୁଏ । ତେଣୁ କୁହାଯାଇ ପାରେ ଯେ ଭଷା ଅଧ୍ୟୟନକୁ ଗଦ୍ୟ ଅଧ୍ୟୟନ କରିବା କୁହା ନ ଗଲେ ମଧ୍ୟ ଗଦ୍ୟ ଅଧ୍ୟୟନ କରିବାକୁ ଭାଷା ଅଧ୍ୟୟନ କରିବା ବୋଲି କୁହାଯାଇ ପାରିବ ।

—*—

# ଲିପିହୀନ ଭାଷା ପାଇଁ ଲିପି

ଭାଷାର ଲିପି ବିଷୟରେ କିଛି କହିବା ପୂର୍ବରୁ ଭାରତର ଭାଷା ସମସ୍ୟା ବିଷୟ ବିଚାରକୁ ନେବା ଆବଶ୍ୟକ । ୧୯୭୧ ଜନଗଣନା ଅନୁସାରେ ଭାରତରେ ମାତୃଭାଷା ସଂଖ୍ୟା ୧୬୫୨ । ଏହା ମଧ୍ୟରୁ ପୁଣି ଆଦିବାସୀ ଭାଷା ସଂଖ୍ୟା ପ୍ରାୟ ୪୦୦ । ଏଥିରୁ ପ୍ରତ୍ୟେକ ଭାଷାକୁ ୫୦,୦୦୦ରୁ ଅଧିକ ଲୋକ କହୁଥିବା ଆଦିବାସୀ ଭାଷା ସଂଖ୍ୟା ୨୫ । ସର୍ବମୋଟ ମାତୃଭାଷା ସଂଖ୍ୟା ୧୬୫୨ ହେଲେ ମଧ୍ୟ ସମ୍ବିଧାନ ସମ୍ମତ ପ୍ରଧାନ ଭାଷା ସଂଖ୍ୟା ମାତ୍ର ୧୫ । ଏହି ୧୫ଟି ଭାଷା ଭିତରୁ ପୁଣି ୧୨ଟି ଭାଷା ଏକ ବା ଏକାଧିକ ପ୍ରଦେଶର ଏକକ ଭାଷା ଭାବରେ ଗୃହୀତ । ସେଗୁଡ଼ିକ ମଧ୍ୟରୁ ହିନ୍ଦୀ ଭାଷାକୁ ଛାଡ଼ିଦେଲେ ଆଉ ରହୁଥିବା ୧୧ଟି ଭାଷାରୁ ଓଡ଼ିଆ, ଅସମୀୟା, ବଙ୍ଗଳା ପୂର୍ବାଞ୍ଚଳର, ମରାଠୀ, ଗୁଜୁରାଟି ପଶ୍ଚିମାଞ୍ଚଳର, ପଞ୍ଜାବୀ, କାଶ୍ମୀର ଉତ୍ତରାଞ୍ଚଳର ଓ ତେଲୁଗୁ, ତାମିଲ, କନ୍ନଡ଼, ମାଲୟାଲମ ଦକ୍ଷିଣାଞ୍ଚଳର ଭାଷା । ହିନ୍ଦୀ ଏକ ମୁଖ୍ୟ ଭାଷା ଭାବରେ ଭାରତର ଛ'ଟି ରାଜ୍ୟର ମାତୃଭାଷା । ସେ ରାଜ୍ୟ ଗୁଡ଼ିକ ହେଲେ ହିମାଚଳ ପ୍ରଦେଶ, ହରିଆନା, ରାଜସ୍ଥାନ, ଉତ୍ତର ପ୍ରଦେଶ, ମଧ୍ୟପ୍ରଦେଶ ଓ ବିହାର । ଅନ୍ୟ ୩ଟି ମଧ୍ୟରୁ ସିନ୍ଧି ଓ ଉର୍ଦ୍ଦୁ ଦୁଇଟି ଭାଷା କୌଣସି ନିର୍ଦ୍ଦିଷ୍ଟ ପ୍ରଦେଶାନ୍ତର୍ଗତ ନୁହନ୍ତି ଏବଂ ଅନ୍ୟଟି ପ୍ରାଚୀନ ସଂସ୍କୃତ, ଯେଉଁଥିରୁ ସବୁ ଭାରତୀୟ ଭାଷା ଗୁଡ଼ିକର ସୃଷ୍ଟି ବୋଲି କୁହାଯାଉଛି । ଭାରତର ଏହି ଭାଷାମାନଙ୍କ ସହିତ ଇଂରାଜୀ ଭାଷାର ବ୍ୟବହାର ଓ ପ୍ରଭାବକୁ ବାଦ ଦେଇ ହେବନି । ଇଂରାଜୀ ବୁଦ୍ଧିଜୀବୀମାନଙ୍କର ଭାଷା ହେଲେ ମଧ୍ୟ ଏହାର ପ୍ରସାର 'ତୁଣ୍ଡବାଇଦ' ପରି ବର୍ତ୍ତମାନ ଭାରତର ସବୁ ଅଞ୍ଚଳରେ ଅନୁଭୂତ ।

ଆଞ୍ଚଳିକ ଭାଷା ଗୁଡ଼ିକ ନିର୍ଦ୍ଦିଷ୍ଟ ଅଞ୍ଚଳର ଅଧିବାସୀମାନଙ୍କର ପ୍ରଧାନ କଥିତ ଓ ବ୍ୟବହୃତ ଭାଷା ହେଲେ ମଧ୍ୟ ସେହି ଅଞ୍ଚଳମାନଙ୍କରେ ଅନ୍ୟ ଭାଷାଭାଷୀମାନଙ୍କ ସଂଖ୍ୟା କିଛି କମ୍ ନୁହେଁ । ଏମାନେ

ବ୍ୟବସାୟିକ ଉଦ୍ଦେଶ୍ୟରେ ବା ସ୍ଥାୟୀ ବାସିନ୍ଦା ଭାବରେ ଏହି ଅଞ୍ଚଳମାନଙ୍କରେ ବାସ କରି ନିର୍ଦ୍ଦିଷ୍ଟ ଆଞ୍ଚଳିକ ଭାଷା ଦ୍ୱାରା ଯେପରି ପ୍ରଭାବିତ ହୁଅନ୍ତି, ସେହିପରି ସେମାନଙ୍କ ନିଜ ମାତୃଭାଷା ଦ୍ୱାରା ପ୍ରଧାନ କଥିତ ଭାଷାକୁ ମଧ୍ୟ ପ୍ରଭାବିତ କରନ୍ତି । ଏହାଛଡ଼ା ଭାରତର ପ୍ରାୟ ସବୁ ଅଞ୍ଚଳରେ ଇଂରାଜୀ ବି ଏକ ମୁଖ୍ୟ ଭାଷା ଭାବରେ ବ୍ୟବହାର ହେଉଛି ।

ପ୍ରଧାନ ଭାଷା ଭାବରେ ଗ୍ରହଣ କରାଯାଇଥିବା ପ୍ରତ୍ୟେକ ଭାଷାର ସ୍ୱତନ୍ତ୍ର ଲିପି ଅଛି । କେବଳ ସଂସ୍କୃତ ଭାଷାକୁ ଛାଡ଼ିଦେଲେ ଅନ୍ୟ ପ୍ରଧାନ ଭାଷାମାନଙ୍କ ବିଷୟ ମନେ ପକାଇଲେ ପ୍ରଥମେ ସେହି ଭାଷାର ରେଖ୍ୱେର ବା ଲିପି ଆମ ଆଖି ଆଗରେ ସ୍ପଷ୍ଟ ହୁଏ ଓ ପରେ ସେ ଭାଷା ଆମ ଆଲୋଚନାର ବିଷୟ ବସ୍ତୁ ହୁଏ । ପ୍ରାଚୀନ ସଂସ୍କୃତ ଭାଷାର ଲିପି ଥିଲା ବ୍ରାହ୍ମୀ ଏବଂ ବ୍ରାହ୍ମୀ ଲିପିରୁ କାଳକ୍ରମେ ଭୌଗୋଳିକ ସୀମା ବିଚ୍ଛିନ୍ନତା ଦୃଷ୍ଟିରୁ ଅନ୍ୟ ଭାଷାଗୁଡ଼ିକ ଏକ କ୍ରମବିକଶିତ ରୂପରେ ଆଜି ନିଜର ସ୍ୱତନ୍ତ୍ରତା ଲାଭ କରି ବିକଶିତ ଓ ଉନ୍ନତ ହୋଇଛନ୍ତି । ବ୍ରାହ୍ମୀ ଲିପିର ବ୍ୟବହାର ଲୁପ୍ତ ହେବାପରେ ସଂସ୍କୃତ ଭାଷାକୁ ଦେବନାଗରୀ ଲିପିରେ ଲେଖା ଯାଉଥିଲେ ମଧ୍ୟ ଭାଷା-ନିର୍ଦ୍ଦିଷ୍ଟ ଅଞ୍ଚଳମାନଙ୍କରେ ଏହାକୁ ବର୍ତ୍ତମାନ ସେହି ଅଞ୍ଚଳର ପ୍ରଧାନ ଭାଷାର ଲିପିରେ ବି ଲେଖା ଯାଉଛି । ଏଣୁ କୁହାଯାଇପାରେ ଯେ ସଂସ୍କୃତ ଭାଷାର ଲିପି ଦେବନାଗରୀ ହେଲେ ବି ଏହା ବର୍ତ୍ତମାନ କୌଣସି ନିର୍ଦ୍ଦିଷ୍ଟ ଅଞ୍ଚଳର କଥିତ ଭାଷା ବା ମାତୃ-ଭାଷା ନୁହେଁ ।

ଭାରତରେ ଏଇ ଆଞ୍ଚଳିକ ଲିପିଗତ ଲିଖିତ ଭାଷା ସହିତ ବହୁତ ଲିପିହୀନ, ଅଲିଖିତ, କଥିତ ଭାଷା ମଧ୍ୟ ରହିଛି । ବହୁ ଭାଷାର ଦେଶ ଭାରତରେ ଏହାର ଭାଷା ସମସ୍ୟା ଓ ଆଞ୍ଚଳିକ ଲିଖିତ ଭାଷାର ଲିପି ସମସ୍ୟା ଅପେକ୍ଷା ଲିପିହୀନ, ଅଲିଖିତ ଭାଷାର ସମସ୍ୟା ଅଧିକ ଜଟିଳ ବୋଲି ମନେ ହୁଏ । ବହୁ ଭାଷାର ଦେଶ ହୋଇଥିବାରୁ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଭାଷାକୁ ପ୍ରାଧାନ୍ୟ ଦେବା ଯେପରି ଦୁଃସାଧ୍ୟ ହୋଇ ପଡ଼ିଛି ସେହିପରି ଏକ ସ୍ୱତନ୍ତ୍ର ରାଷ୍ଟ୍ରଭାଷାର ନିଷ୍ପତ୍ତି ମଧ୍ୟ ଏପର୍ଯ୍ୟନ୍ତ ବହୁ ବିବାଦିତ ।

ବର୍ତ୍ତମାନ ଭାରତରେ ପ୍ରଚଳିତ ହେଉଥିବା ପ୍ରଧାନ ଲିପି-ପ୍ରଧାନ ଭାଷା ଗୁଡ଼ିକ ହେଲେ—ନାଗରୀ, ଗୁରୁମୁଖୀ, ଗୁଜୁରାଟି, ଓଡ଼ିଆ,

ପ୍ରତ୍ୟେକ ଭାଷାର ଗୋଟିଏ ଗୋଟିଏ ଲିପି ଓ ତାମିଲ, ମାଲୟାଲମ୍, ତେଲୁଗୁ ଓ କନ୍ନଡ ଭାଷା ପାଇଁ ଗୋଟିଏ ଲିପି, ପୁଣି ବଙ୍ଗଳା, ଅସମିୟା ଓ ମଣିପୁରୀ ଭାଷା ପାଇଁ ଗୋଟିଏ ଲିପି । ଏସବୁ ଭାଷାର ଲିପି ବ୍ରାହ୍ମୀ ଲିପିରୁ ସୃଷ୍ଟି ଓ କ୍ରମବିକଶିତ । ଏହାଛଡା ଉର୍ଦ୍ଦୁ ଭାଷାର ଲିପି ପରସିଆନ-ଆରବିକ ଲିପିରୁ ସୃଷ୍ଟି ଓ ଇଂରାଜୀ ଭାଷାରେ ବ୍ୟବହୃତ ହେଉଥିବା ରୋମାନ ଲିପିକୁ ମଧ୍ୟ ଭାରତର ଆଉ କେତେକ ଭାଷା ଗ୍ରହଣ କରିଛନ୍ତି ।

ଯଦି ଭାରତରେ ବହୁ ଭାଷା ଥାଇ ମଧ୍ୟ ଗୋଟିଏ ନିର୍ଦ୍ଦିଷ୍ଟ ଲିପିକୁ ଅନୁସରଣ କରଯାଉଥାନ୍ତା ତେବେ ଏହାର ସମସ୍ୟା ଏତେ ଜଟିଳ ହୋଇ ନ ଥାନ୍ତା । ଲିପିହୀନ ବା ଅଲିଖିତ ଭାଷା ସଂଖ୍ୟା ବର୍ତ୍ତମାନ ବି ଲିଖିତ ଭାଷା ସଂଖ୍ୟାଠାରୁ ଢେର ଅଧିକ । କିନ୍ତୁ ଯେଉଁ କେତୋଟି ଭାଷାର ଲିପି ତିଆରି ହୋଇ ଯାଇଛି, ଓ ସେଗୁଡ଼ିକର ଯେଉଁ ଇତିହାସ ରହିଛି ଏବଂ ସେହି ଭାଷାମାନଙ୍କରେ ଯେଉଁ ଉନ୍ନତ ସାହିତ୍ୟ ରହିଛି, ସେହି ଭାଷା-ଗୁଡିକୁ ଲିପିହୀନ ଭାଷାର ଲିପି ସୃଷ୍ଟି ପାଇଁ ବାଦଦେଇ ହେବନି । ସେମାନଙ୍କ ଉପସ୍ଥିତିକୁ ବିଚାରକୁ ନିଆଯାଇ ଲିପିହୀନ ଭାଷାର ଲିପି ତିଆରି ପାଇଁ ଦୃଷ୍ଟି ଦେବାକୁ ହେବ ।

ବର୍ତ୍ତମାନ ପ୍ରଶ୍ନ ଉଠେ ଭାଷା ପାଇଁ ଲିପିର ଆବଶ୍ୟକତା ବା କ'ଣ ? ଲିପି ନଥାଇ ଭାଷା ତ ଅଛି । ଆଧୁନିକ ଭାଷା ବିଜ୍ଞାନ ବର୍ତ୍ତମାନ କଥିତ ଭାଷାକୁ ହିଁ ପ୍ରାଧାନ୍ୟ ଦେଉଛି । କଥିତ ଭାଷା ଭାବ ବିନିମୟ ପାଇଁ ଯଥେଷ୍ଟ । ତେବେ ଲିଖିତ ଭାଷା ଆବଶ୍ୟକ ହେବ କାହିଁକି ?

ବିଶିଷ୍ଟ ଭାଷା ବୈଜ୍ଞାନିକ ଡଃ ଦେବୀ ପ୍ରସନ୍ନ ପଟ୍ଟନାୟକ କହନ୍ତି ଯେ ଲିପି ହେଉଛି ଭାଷାର 'ବାହ୍ୟ ପୋଷାକ' । ପୋଷାକ ବଦଳାଇଲା ପରି ଭାଷାର ଲିପିକୁ ମଧ୍ୟ ବଦଳାଯାଇ ପାରେ । ଜଣେ ଲୋକ ନାଲି ରଙ୍ଗର ପୋଷାକ କାଢ଼ି ଛିଟ ରଙ୍ଗର ପୋଷାକ ପିନ୍ଧି ପାରେ । ପୁଣି ଛିଟ ରଙ୍ଗର ପୋଷାକ ବଦଳାଇ ଦି' ରଙ୍ଗର ପୋଷାକ ପିନ୍ଧି ପାରେ । ପୋଷାକକୁ ଛୋଟ ବା ବଡ ଆକାରରେ ବି ପିନ୍ଧିପାରେ । ଡଃ ପଟ୍ଟନାୟକଙ୍କ କଥା ସତ । କିନ୍ତୁ ତା' ବୋଲି ବର୍ତ୍ତମାନର ସମାଜିକ ସ୍ଥିତିରେ ସେ ନିଜକୁ ଲଙ୍ଗଳା କରି ପୋଷାକକୁ ସମ୍ପୂର୍ଣ୍ଣ କାଢ଼ି କେବେହେଲେ ଫୋପାଡ଼ି ଦେଇ

ନ ପାରେ । ସେହିପରି ଭାଷାର ଆଭରଣ ଲିପିକୁ ଆମେ ଯେତେଥର ଇଚ୍ଛା ସେତେଥର ବଦଳାଇଲେ ମଧ୍ୟ ପୂରାପୁରି କାଢ଼ି ପଦାକୁ ଫୋପାଡ଼ ଦେଇ ନ ପାରୁ । ପୁନଶ୍ଚ ପୋଷାକ ପୁରୁଣା ହେଲେ ଏହାକୁ ବଦଳାଇବାକୁ ପଡ଼ିବ, ନଚେତ ଏହା ଆପେ ଦେହରୁ ବାହାରି ଯିବ । କିନ୍ତୁ ଭାଷାର ପୋଷାକରେ ଏଇଠାରେ ପାର୍ଥକ୍ୟ । ଯଦି ଭାଷା ବ୍ୟବହାରରେ ଅଛି ତାହାର ପୋଷାକ 'ଲିପି' ଯେତେ ପୁରାତନ ହେଉଥିବ ତାହା ସେତେ ମାର୍ଜିତ, ବିକଶିତ ଓ ଉନ୍ନତ ହେଉଥିବ । ଏହାକୁ କାଢ଼ି ଫୋପାଡ଼ି ଦେବା ବା ବଦଳାଇବା ସମୀଚୀନ ହେବ ନାହିଁ । ତେଣୁ ଭାଷାର ଲିପିର ବଦଳ ମଣିଷର ପୋଷାକ ବଦଳାଇବା ପରି ସହଜ ନୁହେଁ । ଦ୍ୱିତୀୟରେ ଭାଷାର ଲିପି ସୃଷ୍ଟି ହେବା ପରେ ଏହାକୁ ବ୍ୟବହାର କରୁଥିବା ଲୋକ-ମାନଙ୍କର ଏହା ସହିତ ଆନ୍ତରିକତା ଏତେ ବଢ଼ିଯାଏ ଯେ ସେ ଆନ୍ତରିକ-ତାକୁ ଉପେକ୍ଷା କରିବା ମଧ୍ୟ କଷ୍ଟସାଧ୍ୟ ।

ତେବେ ଲିପି କ'ଣ ? ଏହା କଣ ଖାଲି ଭଷାର ବାହ୍ୟ ଆଭରଣ ନା ତା'ଠାରୁ ଆହୁରି କିଛି ବେଶି ? ବାହାରେ ପବନ ବହିଲେ ସେ ପବନ ଆମ ଆଖିକୁ ଦେଖାଯାଏ ନାହିଁ । କିନ୍ତୁ ସେ ପବନ ଦେହ ସ୍ପର୍ଶ କଲେ ତାକୁ ଅନୁଭବ କରିହୁଏ । ଏଇ ସ୍ପର୍ଶ ଅନୁଭବ ହିଁ ପବନର ସ୍ଥୂଳ ରୂପ । ଭଷା ମଣିଷ ମୁହଁରୁ ନିଃସୃତ ହେଉଥିବା ବା ବାହାରୁଥିବା ପବନ । ଏଇ ପବନ ସହିତ ନିର୍ଗତ ଧ୍ୱନିକୁ ଆମେ ଶୁଣୁ, ଅନୁଭବ କରୁ କିନ୍ତୁ ଦେଖିପାରୁ-ନାହିଁ । ଲିପି ଏଇ ଅଦେଖା ଧ୍ୱନି ଅନୁଭବର ସ୍ଥୂଳ ରୂପ । ଭାଷାକୁ ଲିପିରେ ହିଁ ଦେଖିହୁଏ, ଶବ୍ଦରେ ବା ଧ୍ୱନିରେ ନୁହେଁ । ଏହା କାନରେ ବାଜିବା ମାତ୍ରେ ମନରେ କିଛି ସମୟ ପାଇଁ ସ୍ଥାୟୀ ହୋଇ କ୍ରମେ ବିଲୁପ୍ତ ହୁଏ । କିନ୍ତୁ ଏହାକୁ ଚିରସ୍ଥାୟୀ ବା ବହୁ ଅଧିକକାଳ ସ୍ଥାୟୀ କରିବା ପାଇଁ ଲିପି ହିଁ ଏକମାତ୍ର ସହଜ ମାଧ୍ୟମ । ଅବଶ୍ୟ ବର୍ତ୍ତମାନ କେତେକ ବୈଜ୍ଞାନିକ ମେସିନ ଯେପରି ରେକର୍ଡ ଓ ଟେପରେକର୍ଡର ପ୍ରଭୃତି ସୃଷ୍ଟି ହୋଇଛି, ସେ ସବୁରେ ଏହାକୁ ଧ୍ୱନି ଆକାରରେ ଧରି ରଖାଯାଉଛି । କିନ୍ତୁ ଏହା ସତ୍ତ୍ୱେ ଲିପି ହିଁ ଭାଷାର ସ୍ଥୂଳ, ସ୍ଥାୟୀ ଓ ସହଜ ରୂପ । ଏହାକୁ ହାତ ସାହଯ୍ୟରେ କେତେକ ବାହ୍ୟ ପଦାର୍ଥ ଯେପରି କଲମ ଓ କାଳି, ପେନ୍‌ସିଲ୍ ବା ଅନ୍ୟ କୌଣସି ଅବଲମ୍ବନ ଓ ଟାଇପ ମେସିନ୍‌ର ଅକ୍ଷର ଲେଖା ପ୍ରଣାଳୀ ଦ୍ୱାରା ବା ଛାପା ଅକ୍ଷରରେ ବର୍ତ୍ତମାନ ସ୍ଥାୟୀ ଭବରେ

କାଗଜ ଉପରେ ଧରି ରଖିହେଉଛି । ସେଥିପାଇଁ କେତେ ପ୍ରକାର ନୂତନ ପଦ୍ଧତି ଦିନକୁ ଦିନ ପରିମାର୍ଜିତ ହୋଇ ବାହାର କରାଯାଉଛି ।

ଅନ୍ୟ ପକ୍ଷରେ ବିଭିନ୍ନ ଆକାରରେ ପ୍ରକାଶ କରାଯାଉଥିବା ସାଙ୍କେତିକ ଚିହ୍ନହିଁ ଲିପି । ଏହି ସାଙ୍କେତିକ ଚିହ୍ନ ଦ୍ୱାରା ଧ୍ୱନିକୁ ଚିହ୍ନିତ କରାଯାଏ । ଗୋଟିଏ ନିର୍ଦ୍ଦିଷ୍ଟ ଧ୍ୱନି ଗୋଟିଏ ନିର୍ଦ୍ଦିଷ୍ଟ ସଙ୍କେତିକ ଚିହ୍ନ ଦ୍ୱାରା ପ୍ରକାଶିତ ହୁଏ । ବିଭିନ୍ନ ଭଷାରେ ବିଭିନ୍ନ ପ୍ରକାରର ସାଙ୍କେତିକ ଚିହ୍ନ ଗ୍ରହଣ କରାଯାଇଛି । କିନ୍ତୁ ଟିକିଏ ତଳେଇ ଦେଖିଲେ ଜଣାଯିବ ଯେ ଯେତେ ଚିହ୍ନ ତିଆରି ହୋଇଛି ତା ମୂଳରେ ସେଇ ଗୋଟିଏ ଉଦ୍ଦେଶ୍ୟ ରହିଛି—ଧ୍ୱନିକୁ ସ୍ଥୂଳ ରୂପ ଦେବା ।

ଯଦି ଲିପି ନ ଥାନ୍ତା ତେବେ ଭାଷାରେ ପ୍ରକାଶିତ ସାହିତ୍ୟ ଓ ଇତିହାସ ବା କୌଣସି ଜାତିର ଇତିହାସ ବା ସଂସ୍କୃତି ବା ଅନ୍ୟାନ୍ୟ ବହୁ ବିବରଣୀର ରେକର୍ଡ ଭାଷାରେ ପ୍ରକାଶ ହୋଇପାରି ନ ଥାନ୍ତା । ଯେଉଁ ଭାଷାର ଲିପି ତିଆରି ହୋଇନାହିଁ ଏବଂ ସେମାନେ କେବଳ କଥିତ ରୂପରେ ରହିଛନ୍ତି, ସେମାନଙ୍କର କ୍ରମବିକାଶ ଆଜି ଅଜଣା । ସେମାନଙ୍କର ଇତିହାସ ବି ସେହିପରି ଅଜ୍ଞାତ । ଏହିପରି କେତେକ ଅଲେଖା ଭାଷା ମଧ୍ୟ ଆଜି ସମ୍ପୂର୍ଣ୍ଣ ବିଲୁପ୍ତ ହେଲେଣି । ଏହିସବୁ ଦୃଷ୍ଟି କୋଣରୁ ବିଚାର କଲେ ଭାଷାର ଲିପି ରହିବା ଆବଶ୍ୟକ । ଭାବ ବିନିମୟ ପାଇଁ କଥିତ ବା ଅଲେଖା ଭାଷା ଯଥେଷ୍ଟ, କିନ୍ତୁ ସେଇ ଭାଷାକୁ ସାଇତିବା ପାଇଁ ଲିପିର ପ୍ରୟୋଜନ ।

ଏଇ ପରିପ୍ରେକ୍ଷୀରେ ବର୍ତ୍ତମାନ କୁହାଯାଇପାରେ ଯେ ଭାଷା ଦୁଇ-ପ୍ରକାର । ଗୋଟିଏ କଥିତ, ଲିପିଗତ ଭାଷା ଓ ଅନ୍ୟଟି କଥିତ ଲିପିହୀନ ଭଷା । ଲିପି ରହିବା ଦ୍ୱାରା ଯେ ଲିପିଗତ ଭଷା, ଲିପିହୀନ ଭଷାଠାରୁ ଉନ୍ନତର ଏ କଥା କୁହାଯାଇ ନ ପାରେ । କିନ୍ତୁ ଲିପି ଭଷାକୁ ସ୍ଥାୟିତ୍ୱ-ପ୍ରଦାନ କରିବା ସଙ୍ଗେ ସଙ୍ଗେ ଭାଷାର ଅଭିବୃଦ୍ଧିରେ ସାହାଯ୍ୟ କରେ ବୋଲି ପୂର୍ବରୁ କୁହାଯାଇଛି ଓ ଏଇ ଦୃଷ୍ଟିରୁ ଲିପିହୀନ ଭାଷାର ଲିପି ଭରତ ପାଇଁ ଏକ ସମସ୍ୟା ହୋଇ ଛିଡା ହୋଇଛି ।

ପ୍ରଥମତଃ ଲିପିହୀନ ଭାଷାର ସଂଖ୍ୟା ଭାରତରେ ଲିପିଗତ ଭାଷା ଅପେକ୍ଷା ବହୁତ ବେଶି । ତେବେ ଏପରି ହୋଇପାରେ ଯେ ଯେତେ-

ଗୁଡ଼ଏ ଲିପିହୀନ ଭାଷା ଅଛି ସେ ସବୁ ପାଇଁ ତ ଗୋଟିଏ ଲିପି ପ୍ରଚଳନ କଲେ ଭଲ ହୁଅନ୍ତା । କିନ୍ତୁ ତା କରଯାଇ ପାରୁନାହିଁ । କାରଣ ଅନ୍ୟ ଲିପିହୀନ ଭାଷାଗୁଡ଼କୁ ଛାଡ଼ଦେଲେ ମଧ୍ୟ କେବଳ ଯେଉଁ ୪୦୦ ଆଦିବାସୀ ଭାଷା ଅଛି ବୋଲି କୁହାଯାଉଛି, ସେଇ ଆଦିବାସୀ ଭାଷା-ଭାଷୀ ଲୋକମାନେ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳର ଲୋକ ନ ହୋଇ ସାରା ଭାରତର ବିଭିନ୍ନ ଭାଷା-ଅଞ୍ଚଳରେ ବିଛାଡ଼ ହୋଇ ରହିଛନ୍ତି । ଏମାନେ ଅଶିକ୍ଷିତ ଏବଂ ଏମାନଙ୍କ ଭାଷା କେବଳ କଥିତ ରୂପରେ ଧ୍ୱନି ଆକାରରେ ରହିଛି । ସେମାନେ ନିଜେ ଏପର୍ଯ୍ୟନ୍ତ ଭାଷାକୁ ସ୍ଥାୟୀ ରୂପରେ ଧରି ରଖିବାକୁ ସକ୍ଷମ ହୋଇ ନାହାନ୍ତି । ଉଦାହରଣ ସ୍ୱରୂପ 'ସାନ୍ତାଳ' ଗୋଟିଏ ଆଦିବାସୀ ଭାଷା । ଏ ଭାଷା କହୁଥିବା ଲୋକେ ଆସାମ, ବିହାର, ମଧ୍ୟପ୍ରଦେଶ, ତାମିଲନାଡ଼ୁ, ମହାରାଷ୍ଟ୍ର, ଓଡ଼ଶା, ପଞ୍ଜାବ, ଉତ୍ତରପ୍ରଦେଶ, ପଶ୍ଚିମବଙ୍ଗ, ଆଣ୍ଡାମାନ ନିକୋବର ଦ୍ୱୀପପୁଞ୍ଜ, ଦିଲ୍ଲୀ ହିମାଚଳପ୍ରଦେଶ, ତ୍ରିପୁରା, ଅରୁଣାଚଳ ଓ ନାଗାଲାଣ୍ଡ ପ୍ରଭୃତି ସ୍ଥାନରେ ବାସ କରନ୍ତି । କିନ୍ତୁ ଏସବୁ ଭାଷା-ଅଞ୍ଚଳରେ ଗୋଟିଏ ନିର୍ଦ୍ଦିଷ୍ଟ ପ୍ରଧାନ ଭାଷା ସହିତ ଅନ୍ୟ ଭାଷାର ଲୋକ ଯେପରି ଅଛନ୍ତି ସାନ୍ତାଳ ଭାଷାର ଲୋକ ମଧ୍ୟ ସେହିପରି ଅଛନ୍ତି । ଏଇ ଅଞ୍ଚଳରେ ବାସ କରୁଥିବା ଅନ୍ୟାନ୍ୟ ଭାଷାର ଲୋକେ ପ୍ରଧାନ ଭାଷାରେ ହିଁ ଶିକ୍ଷାଗତ ଯୋଗ୍ୟତା ଲାଭ କରନ୍ତି । ସେମାନଙ୍କ ନିଜ ମାତୃଭାଷାରେ ଉତ୍କର୍ଷତା ଲାଭ କରିବା ସେମାନଙ୍କ ପକ୍ଷରେ କଷ୍ଟକର ହୋଇପଡ଼େ । ସେହିପରି ସାନ୍ତାଳଭାଷୀ ଲୋକଙ୍କୁ ପ୍ରତି ଭାଷା-ଅଞ୍ଚଳରୁ ବାଛି କେବଳ ସେଇମାନଙ୍କ ଭାଷାର ଲିପି ସୃଷ୍ଟି କରି ଭାଷାର ଉତ୍କର୍ଷତା ବଢ଼ାଇବା ସରକାରୀ ଭାବରେ ଯେପରି କଷ୍ଟସାଧ୍ୟ ବେସରକାରୀ ଭାବରେ ସେହିପରି ଅସମ୍ଭବ । ସାନ୍ତାଳ ଭାଷା ପରି ଆଓ (Ao), ବୋଡ଼ୋ (Bodo/Beno) କୁରୁଖ, ଲୁସାଇ, ମିକିର, ମିରି, ତ୍ରିପୁରୀ ଓ ଆହୁରି ଅନେକ ଲିପିହୀନ ଭାଷାର ଅବସ୍ଥା ସମାନ । ଏହା ଦେଶର ଭୌଗୋଳିକ, ସାମାଜିକ ଓ ଅର୍ଥନୈତିକ ପରିସ୍ଥିତି ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ତା ଛଡ଼ା ପ୍ରତ୍ୟେକ ଲିପିହୀନ ଭାଷାର ଗୋଟିଏ ଲିପି ତିଆରି କରିବା ଯେପରି କଷ୍ଟସାଧ୍ୟ ସେହିପରି ସମୟସାପେକ୍ଷ ।

ଏହାର ବିକଳ୍ପ ଭାବରେ ଯଦି କୁହାଯାଏ ଯେ ଆଜିଠାରୁ ଭାରତରେ ବହୁ ଭାଷା ଥିଲେ ମଧ୍ୟ ସରକାର ସବୁ ଭାଷାର ଗୋଟିଏ ଲିପି

ପ୍ରଚଳିତ କରାଇବେ, ତେବେ ଭାଷାର ନୂଆ ଲିପି ଆରମ୍ଭ ହେବା ଦିନ-ଠାରୁ ହିଁ ପ୍ରତ୍ୟେକ ଭାଷାର ଲେଖା ଆରମ୍ଭ ହେବ ଓ ସେହି ଦିନଟିକୁ ଲିପିର ଆରମ୍ଭ ଦିନ ବୋଲି କହିବାକୁ ହେବ । କାରଣ ଗୋଟିଏ ଭାଷାର ଦୁଇଟି ଲିପି ରହିବାର କିଛି ଅର୍ଥ ହୁଏନାହିଁ । କିନ୍ତୁ ଯେଉଁ ଭାଷାଗୁଡ଼ିକ ଆଜିକୁ ଶହ ଶହ ବର୍ଷ ଧରି ନିଜ ନିଜ ଲିପିରେ ଲେଖା ହୋଇଆସିଛନ୍ତି, ଯେଉଁ ଲିପି ସହିତ ଭାଷାର ଓ ସେହି ଭାଷାର ଲୋକଙ୍କର ଅନ୍ତରଙ୍ଗତା ରହୁଛି ତାହା କ'ଣ ଏକାଦିନକେ ବିଲୁପ୍ତ କରିହେବ ? ନିର୍ଦ୍ଦିଷ୍ଟ-ଭାଷାଗତ, ନିର୍ଦ୍ଦିଷ୍ଟ ଲିପିରେ ଲେଖା ହୋଇ ରହିଥିବା, ପୁରାତନଠାରୁ ଆରମ୍ଭ କରି ଆଧୁନିକ ପର୍ଯ୍ୟନ୍ତ, ଲେଖାଗୁଡ଼ିକୁ କ'ଣ ନୂତନ ଲିପିରେ ପ୍ରକାଶ କରିବା ସହଜ ହେବ ? 'ବିଶ୍ୱନାଗରୀ ଲିପି ପରିଷଦ'ର ଉଦ୍ୟମକୁ ଏଠାରେ ଉଦା-ହରଣ-ସ୍ୱରୂପ ନିଆଯାଇପାରେ । 'ବିଶ୍ୱନାଗରୀ ଲିପି ପରିଷଦ'ର ଶାଖା 'ଉତ୍କଳନାଗରୀ ଲିପି ପରିଷଦ' ନାଗରୀଲିପିରେ 'ଓଡ଼ିଆ ବିଶ୍ୱନାଗରୀ' ବୋଲି ଏକ ପତ୍ରିକା ଗତ ୪ ବର୍ଷ ଧରି ପ୍ରକାଶ କରୁଛନ୍ତି । ଏ ପତ୍ରିକାର ଭାଷା ଓଡ଼ିଆ ଓ ଲିପି ନାଗରୀ । ଓଡ଼ିଆ ଭାଷା କହୁଥିବା ଓ ଓଡ଼ିଆ ଲିପି ବ୍ୟବହାର କରୁଥିବା ଓଡ଼ିଆ ଲୋକେ ଏହାକୁ ପଢ଼ିବାବେଳେ ଅନଭ୍ୟାସ-ବଶତଃ ଟିକିଏ କଷ୍ଟ ଅନୁଭବ କରିବେ । ନାଗରୀ ଲିପିରେ ଓଡ଼ିଆ ପଢ଼ିଲା-ବେଳେ ରହି ରହି ଅକ୍ଷର ଚିହ୍ନି ଚିହ୍ନି ପଢ଼ିବାକୁ ଭାରି ମଜା ଲାଗେ । କାରଣ ପଢ଼ା ଯେତେ ନିର୍ଭୁଲ ଓ ଦ୍ରୁତ ହେବା କଥା ତା' ହୋଇପାରେ ନାହିଁ । କିନ୍ତୁ ଏଇ ଅସୁବିଧାଟି ସାମାନ୍ୟ ଅଭ୍ୟାସ ପରେ ଓ ନିଜ ଓଡ଼ିଆ ଲିପିକୁ ମନରୁ ପାଶୋରି ଦେବା ପରେ ହୁଏତ ଅତିକ୍ରମ କରିହେବ । କିନ୍ତୁ ଓଡ଼ିଆ ଭାଷାରେ ଯେତେ ଲେଖା ଅଛି ତାହାକୁ ନାଗରୀ ଲିପିରେ ପ୍ରକାଶ କରିବା କ'ଣ ଏଇ ପରୀକ୍ଷାମୂଳକ ଉଦ୍ୟମ ଦ୍ୱାରା ସମ୍ଭବ ? ଖାଲି ଓଡ଼ିଆ ଭାଷା ନୁହେଁ ଭାରତର ତଥା 'ବିଶ୍ୱ ନାଗରୀଲିପି ପରିଷଦ' ନାମାନୁସାରେ ସାରା ବିଶ୍ୱର ଲିପି ସଂସ୍କାର କଥା ଭାବିଲେ ମନ ହଠାତ୍ ନିରାଶ ହୋଇପଡ଼େ ।

ଭାରତର ଭାଷାଗୁଡ଼ିକୁ ନାଗରୀ ଲିପିରେ ଲେଖିବା ପରିକଳ୍ପନା ଆଜିର ନୁହେଁ । ଏହା ସ୍ୱାଧୀନତା ପୂର୍ବରୁ ମହାତ୍ମାଗାନ୍ଧୀଙ୍କ ସମୟର କଥା । 'ଓଡ଼ିଆ ବିଶ୍ୱନାଗରୀ' ବର୍ଷ ୩, ୧୯୭୯ ଅକ୍ଟୋବର, ସଂଖ୍ୟା ୧୦ରେ 'ଅଖିଳ ଭାରତୀୟ ଲିପି' ଶୀର୍ଷକ ପ୍ରବନ୍ଧରେ ସବୁ ଭାଷାର ଲିପି ନାଗରୀ ହେବା ବିଷୟରେ ମହାତ୍ମାଗାନ୍ଧୀଙ୍କ ମତକୁ ମଧ୍ୟ ଲକ୍ଷ୍ୟ କରା-

ଯାଇପାରେ । ଏହା ଗାନ୍ଧୀ 'ରଚନାବଳୀ'ରୁ ଉଦ୍ଧୃତ, ନାଗରୀ ଲିପିରେ ଓଡ଼ିଆ ଭାଷାରେ ଲେଖା । ଗାନ୍ଧୀ କହିଛନ୍ତି—"ଭାରତରେ ଦେବନାଗରୀ ଲିପିକୁ ସାର୍ବଭୌମିକ ସ୍ୱୀକୃତି ମିଳିବ ସେତିକିବେଳେ, ଯେତେବେଳେ ଭାରତର ସବୁ ହିନ୍ଦୁ ଏହି ମତକୁ ସମର୍ଥନ କରିବେ ଯେ ସଂସ୍କୃତ ଓ ଦ୍ରାବିଡ ଭାଷା-ପରିବାରର ସବୁଗୁଡ଼ିକ ଭାଷାର ଲିପି ଗୋଟିଏ ହେଉ । ବର୍ତ୍ତମାନ ବଙ୍ଗ ପ୍ରଦେଶରେ ବଙ୍ଗଳା, ପଞ୍ଜାବରେ ଗୁରୁମୁଖୀ, ସିନ୍ଧୁ ପ୍ରଦେଶରେ ସିନ୍ଧି, ଉତ୍କଳରେ ଓଡ଼ିଆ, ଗୁଜୁରାଟରେ ଗୁଜୁରାଟି, ଆନ୍ଧ୍ର ପ୍ରଦେଶରେ ତେଲେଗୁ ତାମିଲନାଡ଼ୁରେ ତାମିଲ, କେରଳରେ ମାଲ-ୟାଲମ୍, କର୍ଣ୍ଣାଟକରେ କନ୍ନଡ ଲିପି ବ୍ୟବହୃତ ହେଉଛି । ବିହାରର କୈଥି ଓ ଦକ୍ଷିଣ ମୋଡ଼ି ଲିପିକୁ ଏଠାରେ ଉଲ୍ଲେଖ ନ କଲେ ନାହିଁ । ଯଦି ଆମେ ସବୁ ବ୍ୟାବହାରିକ ଓ ରାଷ୍ଟ୍ରୀୟ ପ୍ରୟୋଜନ ସକାଶେ ଏହି ଲିପି-ଗୁଡ଼ିକ ପରିବର୍ତ୍ତେ ଦେବନାଗରୀ ଲିପି ପ୍ରୟୋଗ କରିବା, ତେବେ ତାହା ପ୍ରକୃତରେ ବଡ ପ୍ରଗତି ହେବ । ତାହା ଦ୍ୱାରା ସମଗ୍ର ଭାରତରେ ହିନ୍ଦୁ-ମାନଙ୍କର ଏକତାକୁ ଦୃଢ଼ କରିବାର ସାହାଯ୍ୟ ମିଳିବ ଏବଂ ବିଭିନ୍ନ ପ୍ରଦେଶ ମଧ୍ୟରେ ଅଧିକ ନିକଟ ସମ୍ପର୍କ ସ୍ଥାପିତ ହୋଇପାରିବ । ଯେ କୌଣସି ନୂଆ ଲିପିକୁ ଭଲ ଭାବରେ ଶିଖିବା ପାଇଁ କେତେ ପରିଶ୍ରମ କରିବାକୁ ପଡେ ତାହା ଭାରତର ବିଭିନ୍ନ ଭାଷା ଓ ଲିପି ସମ୍ବନ୍ଧରେ ଅଭିଜ୍ଞ ବ୍ୟକ୍ତି-ମାନେ ଉତ୍ତମ ରୂପେ ଜାଣନ୍ତି । କେତେଗୁଡ଼ିଏ ଲିପି ତ ଯଥାର୍ଥରେ ବଡ ସୁନ୍ଦର. ପୁଣି ଦେଶପ୍ରେମ ହେତୁ କୌଣସି କାର୍ଯ୍ୟ କଷ୍ଟସାଧ୍ୟ ହୁଏ ନାହିଁ । ସେଥିପାଇଁ ବିଭିନ୍ନ ଲିପି ଶିଖିବାରେ ଯେଉଁ ସମୟ ଓ ପରିଶ୍ରମ ଲାଗେ, ତାହା ବୃଥା ହୁଏ ବୋଲି କୌଣସି ପ୍ରକାରେ କହିହେବ ନାହିଁ । ମାତ୍ର କୋଟି କୋଟି ସାଧାରଣ ଲୋକଙ୍କଠାରୁ ଆମେ ଏ ପ୍ରକାରର ତ୍ୟାଗ ମନୋଭାବ ଆଶା କରି ନ ପାରୁ । ସେମାନଙ୍କ ସକାଶେ ରାଷ୍ଟ୍ରନେତାମାନଙ୍କୁ ସବୁ କଥା ସହଜ କରିବାକୁ ହେବ । ସେଥିପାଇଁ ଆମର ଏପରି ଏକ ଲିପି ହେବା ଦରକାର, ଯାହାକୁ ସମଗ୍ର ଭାରତର ସମସ୍ତେ ନିଜ ନିଜ ଭାଷାର ଆବଶ୍ୟକତା ଅନୁସାରେ ସହଜରେ ଖାପ ଖୁଆଇ ନିଜର କରି ନେଇ ପାରିବେ । ପୁଣି ସବୁ ଭାଷାର ଆବଶ୍ୟକତା ଅନୁସାରେ ଖାପରେ ପଡିଯାଇ ପାରିବାର ଯେଉଁ ବୈଶିଷ୍ଟ୍ୟ ଦେବନାଗରୀ ଲିପିରେ ଅଛି, ତାହା ଆଉ କୌଣସି ଲିପିରେ ନାହିଁ । ପୁଣି ଏହି ପ୍ରୟୋଜନୀୟତା ପାଇଁ ଅନ୍ୟ କୌଣସି ଲିପି ଦେବନାଗରୀ ଲିପି ଭଳି ସମ୍ପନ୍ନ ଓ ସମାର୍ଜିତ ନୁହେଁ ।"

ମହାତ୍ମାଗାନ୍ଧୀଙ୍କ ସମୟରୁ ଆଜିକୁ ପ୍ରାୟ ୪୦ ବର୍ଷ ଧରି ଦେବ-ନାଗରୀ ଲିପିକୁ ଭାରତୀୟ ଲିପି କରିବାକୁ ଉଦ୍ୟମ ହେଉଥିଲେ ମଧ୍ୟ ସେ ଦିଗରେ ଯଥେଷ୍ଟ ଅଗ୍ରଗତି ହୋଇଛି ବୋଲି ମନେହୁଏ ନାହିଁ ।

ଏ ପର୍ଯ୍ୟନ୍ତ ବି କେହି କେହି ଲିପିହୀନ ଭାଷାମାନଙ୍କର ଲିପି ଦେବନାଗରୀ ବା ରୋମାନ ହେଲେ ଭଲ ହେବ ବୋଲି ବିଚାରୁଛନ୍ତି । ଏହାର ସପକ୍ଷରେ ଯୁକ୍ତି ଦିଆଯାଉଛି ଯେ ଯେହେତୁ ଭାରତରେ ତ୍ରିଭାଷୀ-ସୂତ୍ରକୁ ଗ୍ରହଣ କରାଯାଇଛି, ପ୍ରତ୍ୟେକ ଛାତ୍ରକୁ ଅତି କମରେ ଅନ୍ତତଃ ୩ଟି ଭାଷା ଶିକ୍ଷା କରିବାକୁ ପଡ଼ଥାଏ, ସେ ୩ଟି ମଧ୍ୟରେ ମାତୃଭାଷା ସହିତ ହିନ୍ଦୀ ଓ ଇଂରାଜୀ ଅନ୍ତର୍ଭୁକ୍ତ । ଏଣୁ ଲିପିହୀନ ଭାଷାମାନଙ୍କ ପାଇଁ ନୂତନ ଲିପି ବଦଳରେ ଏହି ଦୁଇଟିରୁ ଗୋଟିକୁ ଗ୍ରହଣ କରାଯାଇପାରେ ।

ଦେବନାଗରୀ ଲିପିକୁ ଗ୍ରହଣ କରି ଏହାର ସପକ୍ଷବାଦୀମାନେ କହନ୍ତି ଯେ, ଦେବନାଗରୀ ଲିପିର ଅଧିକାଂଶ ଭାରତୀୟ ପ୍ରଧାନ ଭାଷାର ଲିପି ସହିତ ସମତା ରହିଛି । ହିନ୍ଦୀକୁ ରାଷ୍ଟ୍ରଭାଷାର ସମ୍ମାନ ଦିଆଯାଇ ଥିବାରୁ ଏ ଲିପି ଗ୍ରହଣ କଲେ କୌଣସି ଭାଷାଭାଷୀଙ୍କର ଆପତ୍ତି ନ ରହି ପାରେ । ହିନ୍ଦ ଭାରତର ଛ'ଟି ରାଜ୍ୟର ମାତୃଭାଷା ଓ ଏହାର ଲିପି ମଧ୍ୟ ମରାଠୀ ଓ ସଂସ୍କୃତ ଭାଷା ଦ୍ୱାରା ଗୃହୀତ । ରୋମାନ ଲିପି ଅପେକ୍ଷା ଏହା ଅଧିକ ଧ୍ୱନ୍ୟାତ୍ମକ ଓ ଛାପା ଅକ୍ଷରରେ ଏହାର ପ୍ରସାର ସହଜ । ରୋମାନ ଲିପି ବିରୁଦ୍ଧରେ ଏମାନେ କହନ୍ତି ଯେ ରୋମାନ ଲିପି ବିଦେଶୀ ଲିପି ଓ ଭାରତରେ ଇଂରାଜୀର ପ୍ରସାର ହିନ୍ଦ ଅପେକ୍ଷା କମ୍ । ପୁଣି ରୋମାନ ଲିପି ଧ୍ୱନ୍ୟାତ୍ମକ ନୁହେଁ ଏବଂ ଏହା ଭାରତୀୟ ଭାଷାର ଲିପିକୁ ଠିକ୍ ଭାବରେ ପ୍ରକାଶ କରିବାକୁ ମଧ୍ୟ ଅକ୍ଷମ । ଶ୍ରୀଯୁକ୍ତ ଗୋଲକ ବିହାରୀ ଧଳ କିନ୍ତୁ ଭାରତୀୟ ଭାଷାମାନଙ୍କର ଲିପି ଦେବନାଗରୀ ହେବା ସପକ୍ଷରେ ତାଙ୍କର 'ଆଧୁନିକ ଦୁନିଆରେ ଭାଷା ସମସ୍ୟା' ଆଲୋଚନା କରିବାକୁ ଯାଇ ମତ ଦେଇଛନ୍ତି ।

ରୋମାନ ଲିପିର ସପକ୍ଷବାଦୀମାନେ ଅନ୍ୟ ପ୍ରକାର ଯୁକ୍ତି ଦେଖାନ୍ତି । ସେମାନଙ୍କ ମତରେ ରୋମାନ ଲିପିର ସରଳ ରୈଖିକ ଅକ୍ଷର-ଆକାର ଶିଖିବା ପାଇଁ ସହଜ । ଏହି ଲିପି ପୃଥିବୀର ବହୁ ଭାଷାର ଲିପି ଓ ଏ ଲିପିରେ ଲେଖା ମଧ୍ୟ ବହୁତ ବେଶୀ । ଛପା

ଅକ୍ଷରର ପ୍ରସାର ସହିତ ଏହା ଦେଶର ଅର୍ଥନୀତି ଦ୍ୱାରା ମଧ୍ୟ ନିୟନ୍ତ୍ରିତ ହୋଇପାରିବ । ଦେବନାଗରୀ ଲିପି ବିପକ୍ଷରେ ଏମାନେ କହନ୍ତି ଯେ ଦେବନାଗରୀ ଲିପି ଲେଖିବାକୁ ଶିଖିବା କଷ୍ଟକର ଓ ଗୋଟିଏ ଅକ୍ଷରରୁ ଅନ୍ୟ ଅକ୍ଷରକୁ ଚିହ୍ନିବାକୁ ଅଧିକ ସମୟ ଲାଗିଥାଏ ।

ପୁଣି ଯଦି କୁହାଯିବ ଯେ ବିଭିନ୍ନ ଭାଷା ଅଞ୍ଚଳରେ ବ୍ୟବହୃତ ହେଉଥିବା ପ୍ରଧାନ ଭାଷାର ଲିପିକୁ ଲିପିହୀନ ବା ଲିପି ନଥିବା ଭାଷାର ଲିପି ଭାବରେ ଗ୍ରହଣ କରାଯିବ ତେବେ ମଧ୍ୟ ସେହି ଅଞ୍ଚଳର ଶିକ୍ଷାର ମାଧ୍ୟମ ରୂପେ ବ୍ୟବହୃତ ହେଉଥିବା ପ୍ରଧାନ ଭାଷା ସହିତ ଏକାଧିକ ଲିପିହୀନ ଭାଷା ଓ ପ୍ରଧାନ ଭାଷା ସହିତ ରହିଥିବା ଅନ୍ୟ ଗୌଣ ଭାଷାଗୁଡ଼କ ଏହାର ବିକାଶରେ ଅନ୍ତରାୟ ହେବେ । ଆହୁରି ମଧ୍ୟ ଗୋଟିଏ ଲିପିହୀନ ଭାଷାର ଲୋକ ବିଭିନ୍ନ ଭାଷା-ଅଞ୍ଚଳରେ ବାସ କରୁଥିବାରୁ ସେହି ଭାଷାର ଏକାଧିକ ଲିପି ତିଆରି ହେବ । ସାନ୍ତାଳ ଭାଷାର ଉଦାହରଣକୁ ପୁଣି ଥରେ ଏଠାରେ ଉଲ୍ଲେଖ କରାଯାଇପାରେ । ଏ କ୍ଷେତ୍ରରେ କୁହାଯିବ ଯେ ଏକାଧିକ ଲିପି ଥିବା ଗୋଟିଏ ଭାଷାର ଉନ୍ନତି ସମ୍ଭବ ନୁହେଁ । ଏହା ଏକ ଗଜା ମରୁଡ଼ ଅବସ୍ଥା ସୃଷ୍ଟି କରିବ ।

ପୃଥିବୀରେ ଭାଷାର ଲିପି ତଥା ଭାଷା ସମସ୍ୟାର ସମାଧାନ ପାଇଁ ବହୁ ବିଭିନ୍ନ ସମୟରେ ଅନେକ ନୂତନ ଚିନ୍ତା ସବୁ କରାଯାଇଛି । ବର୍ତ୍ତମାନ ବି ସେଥିପାଇଁ ନାନା ପରୀକ୍ଷା ହେଉଛି । ଫଳରେ ଆବାସାମା ଲିପି, ନବଗା ଅକ୍ଷର, ଆନ୍ତର୍ଜାତିକ ଲିପି ତଥା ଏସ୍ପାରେଣ୍ଟୋ, ଭୋଲାପୁକ, ଇଡ଼ୋ, ଇଣ୍ଟରଲିଙ୍ଗୁଆ ପ୍ରଭୃତି ନୂତନ ଆବିଷ୍କାର ଗୁଡ଼କର ସୃଷ୍ଟି ହୋଇଛି । କିନ୍ତୁ ଏ ସବୁଗୁଡ଼କ ନୂତନ ଆବିଷ୍କାରମାନ ପୂର୍ଣ୍ଣ ସଫଳତା ହାସଲ କରିବାରେ ସକ୍ଷମ ହୋଇଛନ୍ତି ବୋଲି କହିହେବ ନାହିଁ । ବରଂ ଏ ଗୁଡ଼କ ସମସ୍ୟାର ସମାଧାନ ଦିଗରେ ସାହାଯ୍ୟ ନ କରି ସମସ୍ୟା ବୃଦ୍ଧିରେ ସାହାଯ୍ୟ କରିଛନ୍ତି । ଏସ୍ପାରେଣ୍ଟୋ ଭାଷା ୧।୮୭ରୁ ଆରମ୍ଭ ହୋଇ ଆଜି ପର୍ଯ୍ୟନ୍ତ ୮୩ଟି ଦେଶରେ ୧ ଲକ୍ଷରୁ ଅଧିକ ଲୋକଙ୍କ ଦ୍ୱାରା ବ୍ୟବହୃତ ହେଉଛି । ଏ ଭାଷାରେ ପ୍ରାୟ ୧୦,୦୦୦ ବହି ଲେଖା ଗଲାଣି । ୧୦୦ଟି ସାମୟିକ ପତ୍ରିକା ପ୍ରକାଶ କରାଯାଉଛି । ଏ ଭାଷାରେ ସେକ୍ସପିୟର, ଡିକେନ୍ସ, ହାନ୍ସ ଆଣ୍ଡାରସନ୍, ଗ୍ରୀମ୍, ରବୀନ୍ଦ୍ରନାଥ, ଗେଟେ, ହୋମର, ଦାନ୍ତେ ପ୍ରଭୃତିଙ୍କର ବହି ଅନୁବାଦ କରାଯାଇଛି ।

ବାଇବେଲ ଓ ଭଗବତ ଗୀତା ମଧ୍ୟ ଏ ଭାଷାରେ ଅନୁବାଦ ହୋଇଛି । ଏ ସବୁ ସତ୍ତ୍ୱେ ଏ ଭାଷା ଆନ୍ତର୍ଜାତିକ ସ୍ୱୀକୃତି ଏ ପର୍ଯ୍ୟନ୍ତ ପାଇ ପାରି ନାହିଁ । ଭାଷା ବା ଲିପି ସମସ୍ୟାର ସମାଧାନ ପାଇ ନୂଆ ବାହାରୁଥିବା ସିଦ୍ଧାନ୍ତଗୁଡ଼ିକ ଏହିପରି ଅଧବାଟରେ ହିଁ ଅଟକି ରହୁଛନ୍ତି ।

ଭାରତର ବହୁ ଭାଷା ଓ ଲିପିହୀନ ଭାଷାର ଲିପିକୁ ଆଖି ଆଗରେ ରଖି ଏ ସମସ୍ୟାକୁ ସହାନୁଭୂତି ସହିତ ବିଚାରକୁ ନେବା ଦରକାର । ଯେ କୌଣସି ଗୋଟିଏ ସମାଧାନ ଆଣିବାକୁ ଚେଷ୍ଟାକଲେ ତାହାର ଭଲ ଓ ମନ୍ଦ ଦୁଇଟି ଦିଗ ରହିଛି । ତେଣୁ ଖାଲି ଦୋଷ ଦେଖିଲେ ସମସ୍ୟାର କୌଣସି ସମାଧାନ ହୋଇ ନ ପାରେ । ଆଜି ଯେତେଗୁଡ଼ିଏ ପ୍ରଧାନ ଭାଷାର ଲିପି ରହିଛି, ସେ ଲିପିଗୁଡ଼ିକର ଇତିହାସ ହଜାର ହଜାର ବର୍ଷର ପୁରୁଣା । ଏହା ଏକାଦିନକେ ହୋଇ ନାହିଁ । କେତେ ଘଷି ମାଜି ହୋଇ କେତେ ବାଧାବିଘ୍ନ ଅତିକ୍ରମ କରି ଆମ ଲିପିଟି ଆଜି ଆମ ପାଖରେ ପହଞ୍ଚିଛି । ସବୁ ଭାଷାର ଲିପି ପାଇଁ ଏ ପରିଣତି ସମାନ । ନିର୍ଦ୍ଦିଷ୍ଟ ଭାଷାର ଲୋକେ ସେ ଲିପି ବିଷୟରେ ସଚେତନ ହେବା ପୂର୍ବରୁ ହିଁ ତାକୁ ନିଜର କରି ସାରିଥାନ୍ତି । କିନ୍ତୁ ଆଜି ଯେତେବେଳେ ଆମେ ସଚେତନ ଭାବରେ କୌଣସି ଭାଷାର ଲିପି ଏକାଦିନକେ ତିଆରି କରିବାକୁ ବା ବାଛିବାକୁ ଯାଉଛେ ସେତେବେଳେ ଆମକୁ ଏକାଧିକ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଲେ ମଧ୍ୟ ଅସୁବିଧା ଭିତରୁ ସୁବିଧା ଓ ସହଜ ଉପାୟଟିକୁ ଆବିଷ୍କାର କରିବାକୁ ପଡ଼ିବ ।

ଭାରତରେ ଭାଷାର ଲିପି ସମସ୍ୟାର ଏହି ପୃଷ୍ଠଭୂମି ଉପରେ ନୂତନ ଲିପି ସୃଷ୍ଟି କରିବାପାଇଁ ଚେଷ୍ଟା କରିବା ଅପେକ୍ଷା ନିର୍ଦ୍ଦିଷ୍ଟ ଭାଷା-ଅଞ୍ଚଳର ଲିପିକୁ ସେଇ ଅଞ୍ଚଳର ଲିପିହୀନ ଭାଷାଗୁଡ଼ିକର ଲିପି ଭାବରେ ଗ୍ରହଣ କରଯାଇ ପାରେ । କିନ୍ତୁ ଏହି ସିଦ୍ଧାନ୍ତର ଅସୁବିଧା ବିଷୟରେ ପୂର୍ବରୁ ସୂଚନା ଦିଆଯାଇଛି । ସେହି ଅସୁବିଧାକୁ ଆଖି ଆଗରେ ରଖି ଏ ପରିକଳ୍ପନାରେ ଆଗେଇବାକୁ ହେବ । ନିର୍ଦ୍ଦିଷ୍ଟ ଅଞ୍ଚଳର ପ୍ରଧାନ ଭାଷାର ଲିପିକୁ ଗ୍ରହଣ କଲେ ନୂଆ ଛପା ଅକ୍ଷର ତିଆରି କରିବାକୁ ପଡ଼ୁନ ଥିବାରୁ ସେଇ ଭାଷାର ପୁସ୍ତକ ପ୍ରଣୟନ ଓ ପ୍ରକାଶନ ପାଇଁ ଅର୍ଥନୈତିକ ଦିଗରୁ ରାଜ୍ୟ ପକ୍ଷରେ ଏହା ସହଜସାଧ୍ୟ ହେବ । ପ୍ରଧାନ ଭାଷାର ଲିପିକୁ ଗ୍ରହଣ କରିବାକୁ ଲିପିହୀନ ଭାଷାଭାଷୀ ଲୋକଙ୍କ ମନରେ ବିରୋଧ ଭାବ

କମ୍ ହେବା ସଙ୍ଗେ ସଙ୍ଗେ ପ୍ରଧାନ ଭାଷାର ପରିବେଶ ଲିପିହୀନ ଭାଷା-ଭାଷୀଙ୍କୁ ଭାଷାଶିକ୍ଷାରେ ସାହାଯ୍ୟ ମଧ୍ୟ କରିବ ।

ଡଃ ପଟ୍ଟନାୟକ ଓ 'କେନ୍ଦ୍ରୀୟ ଭାଷା ସଂସ୍ଥାନ'ର ଅନ୍ୟତମ ଭାଷାନୀତିଜ୍ଞ ଡଃ ଇ. ଆନାମଲାଇ ଦୁହେଁ ଏଇ ମତ ପୋଷଣ କରନ୍ତି । ଡଃ ପଟ୍ଟନାୟକ dominant language କଥା କହିଲାବେଳେ ଡ ଆନାମଲାଇ official language କଥା କହିଛନ୍ତି । Dominant language ବା official language କହିଲେ ନିର୍ଦ୍ଦିଷ୍ଟ ଭାଷା-ଅଞ୍ଚଳର ପ୍ରଧାନ ଭାଷାକୁ ହିଁ ବୁଝାଏ । କିନ୍ତୁ ପ୍ରଧାନ ଭାଷାକୁ official language କହିବା ପୁରାପୁରି ଠିକ୍ ନୁହଁ । କାରଣ ପ୍ରଧାନ ଭାଷା କେବଳ ଶିକ୍ଷା ବା ସାହିତ୍ୟର ମାଧ୍ୟମ ହେବା ଛଡ଼ା, ସରକାରୀ ସ୍ତରରେ ଏପର୍ଯ୍ୟନ୍ତ ବ୍ୟବହାର ହୋଇ ପାରିନାହିଁ । ସରକାରୀ ସ୍ତରରେ ଏପର୍ଯ୍ୟନ୍ତ ବି ସେଇ ଇଂରେଜୀ ଭାଷା ବ୍ୟବହାର ହେଉଛି । ଡ' ଆନାମଲାଇ କହନ୍ତି ଯେ ସବୁ ଭାଷାର ଧ୍ୱନି ଏକପ୍ରକାର ହୋଇ ନ ଥିବାରୁ ଏବଂ ଗୋଟିଏ ଭାଷାର ଲିପି କେବଳ ସେହି ଭାଷାର ଧ୍ୱନିକୁ ପ୍ରକାଶ କରିବାକୁ ସକ୍ଷମ ହୋଇଥିବାରୁ ଗୋଟିଏ ଭାଷାର ଲିପି ଅନ୍ୟ ଭାଷାର ଧ୍ୱନିକୁ ଠିକ୍ ଭାବରେ ପ୍ରକାଶ କରିବାକୁ ସମର୍ଥନ ହୋଇ ନ ପାରେ । ଉଦାହରଣ ସ୍ୱରୂପ ସେ କହନ୍ତି ବଙ୍ଗଳ ଭାଷାର । ū । ଧ୍ୱନି କୋକବୋରେକ । w̄ । ଧ୍ୱନିକୁ ପ୍ରକାଶ କରିବାକୁ ଅସମର୍ଥ । ଯଦି ଏହାକୁ । ū । ଧ୍ୱନିଦ୍ୱାର ପ୍ରକାଶ କରାଯାଏ, ତେବେ ତାହା ଭାଷାତତ୍ତ୍ୱର ନିୟମ, ଲିପି ଓ ଧ୍ୱନିର ଅଭେଦ୍ୟ ସମ୍ପର୍କକୁ ପୂରଣ କରିବ ନାହିଁ । ଡଃ ଆନାମଲାଇଙ୍କ କଥା ଏ ସମ୍ପର୍କରେ ଠିକ୍ । କିନ୍ତୁ ଏହାସତ୍ତ୍ୱେ ମଧ୍ୟ ଏକାଧିକ ଭାଷାର ଗୋଟିଏ ଲିପି ପ୍ରଚଳନ ଆମର କେତେକ ପ୍ରଧାନ ଭାଷା ମଧ୍ୟରେ ଯେପରି ଅଛି ସେହିପରି ବର୍ତ୍ତମାନ ପରୀକ୍ଷାମୂଳକ ଭାବରେ କେତେକ ଲିପିହୀନ ଭାଷାର ଲିପି ଭାବରେ କେତେକ ଭାଷା-ଅଞ୍ଚଳର ପ୍ରଧାନ ଭାଷାର ଲିପିକୁ ନିଆଯାଇ ପାରିଛି । ଉଦାହରଣ ସ୍ୱରୂପ ବଙ୍ଗଳା ଓ ଅସମୀୟା ଭାଷାର ଲିପି ଗୋଟିଏ । ସେହିପରି ତାମିଲ ଓ ମାଲୟାଲମ ପାଇଁ ଗୋଟିଏ ଏବଂ ହିନ୍ଦୀ ଓ ମରାଠୀ ପାଇଁ ଆଉ ଗୋଟିଏ ଲିପି ପ୍ରଚଳନ କରାଯାଇଛି । ଲିପି ଏକ ହେବାଦ୍ୱାରା ଭାଷାର କିଛି ଅସୁବିଧା ହେଉ-ନାହିଁ । ଦେଶରେ ଥିବା ଲିପିହୀନ ଭାଷା ପାଇଁ ଲିପି ତିଆରି କରିବାରେ ନୂଆ ଲିପି ତିଆରି ନ କରି ପ୍ରଧାନ ଭାଷାର ଲିପିକୁ ଗ୍ରହଣ

କଲେ ଏହାର ସମସ୍ୟା କ୍ରମଶଃ ଦୂର ହୋଇ ପାରିବ ବୋଲି ଆଶା କରା- ଯାଉଛି । ଏହାଦ୍ୱାରା ଅଧିକ ଲିପି ସୃଷ୍ଟି ନ ହୋଇ ଯେଉଁ ୧୫ଟି ପ୍ରଧାନ ଭାଷାର ଲିପି ରହିଛି ସେଗୁଡ଼ିକୁ ଆବଶ୍ୟକତା ଅନୁଯାୟୀ ବ୍ୟବହାର କରି ହେବ । ଲିପିହୀନ ଭାଷା ପାଇଁ ଲିପି ତିଆରି କରିବାରେ ପ୍ରଧାନ ଭାଷାର ଲିପିର ସାହାଯ୍ୟ ନେବା କ୍ଷେତ୍ରରେ 'କେନ୍ଦ୍ରୀୟ ଭାଷା ସଂସ୍ଥାନ'ର ଉଦ୍ୟମ ପ୍ରଶଂସନୀୟ । ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମର ଯୋଜନା ଅନୁଯାୟୀ ବର୍ତ୍ତମାନ ସୁଦ୍ଧା ୩ଟି ଭାଷାର, ଯଥା—ବଙ୍ଗଳା ବା ଅସମୀୟା ଲିପିରେ 'ମଣିପୁରୀ' ଭାଷାକୁ, ଓଡ଼ିଆ ଲିପିରେ 'କୁଭି' ଭାଷାକୁ ଓ ଦେମାନ ଲିପିରେ 'ଆକମି' ଭାଷାକୁ ଲେଖାଯାଇଛି । ଓଡ଼ିଶାର ଆଦିବାସୀ 'ଜୁଆଙ୍ଗ' ଭାଷାକୁ ମଧ୍ୟ ଓଡ଼ିଆ ଲିପିରେ ଲେଖିବାକୁ ଉଦ୍ୟମ ହେଉଛି । ଯୋଜନାରେ ଅନୁସୃତ ହେଉଥିବା ଲିପିହୀନ ଭାଷାର ଲିପିରେ କେତେକ ଧ୍ୱନିଗତ ବୈଶିଷ୍ଟ୍ୟ ପାଇ ପ୍ରଧାନ ଭାଷାର ଲିପିରେ ପରି- ବର୍ତ୍ତନ କରଯାଇ ସେ ଭାଷାର ଲିପି ତିଆରି ହୋଇଛି । କିନ୍ତୁ ଏହି ଲିପି ଗ୍ରହଣ କରଯିବା ସଙ୍ଗେ ସଙ୍ଗେ ଏହାକୁ ମଧ୍ୟ ଆଖି ଆଗରେ ରଖାଯାଇଛି ଯେ ଲିପିହୀନ ଭାଷାର ଲୋକେ ପ୍ରଧାନ ଭାଷାର ଲିପିରେ ନିଜ ଭାଷାକୁ ଶିଖି ପାରିବା ପରେ କ୍ରମେ ପ୍ରଧାନ ଭାଷାକୁ ମଧ୍ୟ ଭବିଷ୍ୟତରେ ଶିଖି ଗ୍ରହଣ କରିବେ । ମନେହୁଏ ଏହାର ଉଦ୍ଦେଶ୍ୟ ଏପରି ହୋଇପାରେ ଯେ ସେମାନେ ଭବିଷ୍ୟତରେ ନିଜ ଭାଷାର ଚୌବିଦ୍ୟକୁ କାଳକ୍ରମେ ପ୍ରଧାନ ଭାଷାରେ ହିଁ ପ୍ରକାଶ କରିବେ, ହୁଏତ ଅନୁବାଦ ଦ୍ୱାରା ବା ନିଜସ୍ୱ ସୂତନ ସୃଷ୍ଟି ଦ୍ୱାରା ବା ଏପରି ମଧ୍ୟ ହୋଇପାରେ ଯେ ପ୍ରଧାନ ଭାଷାର ଲିପିକୁ ଗ୍ରହଣ କରି ନିଜର ଲିପିହୀନ ଭାଷାକୁ ଲେଖିବାର ମାଧ୍ୟମ ରୂପେ ଅସ୍ତ୍ର କରିବା ପରେ ସେଇ ଭାଷାଭାଷୀର ଲୋକେ ନିଜ ଭାଷାକୁ ସାଇତିବା ପାଇଁ ଓ ନିଜ ଭାଷାର ବିକାଶ ପାଇଁ ସ୍ୱତନ୍ତ୍ର ଉଦ୍ୟମ କରି ପାରିବେ । ଏ କ୍ଷେତ୍ରରେ ଏଥିପାଇଁ ଯଥେଷ୍ଟ ଉତ୍ସାହ ଓ ଉଦ୍ୟମ ସରକାରୀ ବା ବେସରକାରୀ ଉଭୟ ସ୍ତରରେ ହେବା ଉଚିତ । ଓଡ଼ଶାର କେତେଜଣ ପ୍ରସିଦ୍ଧ ଲେଖକ ଓ କବି ଓଡ଼ଶାର କେତେକ ଆଦିବାସୀ ଭାଷାକୁ ଓଡ଼ିଆ ଲିପିରେ ଲେଖି ତାହାର ଓଡ଼ିଆ ଅନୁବାଦ କଲେଣି ।

'କେନ୍ଦ୍ରୀୟ ଭାଷା-ସଂସ୍ଥାନ'ର ଏହି ଉଦ୍ୟମ ଆହୁରି ଅନେକ ଭାଷାର ଲିପି ତିଆରି ପାଇଁ ବର୍ତ୍ତମାନ ସୁଦ୍ଧା ଅବ୍ୟାହତ ରହିଛି । ଏ 'ସଂସ୍ଥାନ'ରେ ଫିଲ୍ଡ-ଲିପି ସାହାଯ୍ୟରେ ଦେବନାଗରୀ, ବଙ୍ଗଳା ଓ ଉର୍ଦ୍ଦୁ ଲିପିକୁ ଏବଂ

ଟେଲିଭିଜନରେ କନ୍ନଡ, ତେଲୁଗୁ ଓ ତାମିଲ ଲିପି-ଶିକ୍ଷା ଦିଆଯାଇ ପାରୁଛି । ଲିପି ଶିକ୍ଷାକୁ ଗ୍ରହଣୀୟ କରିବାକୁ ଏ ସବୁର ବ୍ୟବହାର ସରକାରୀ ଭାବରେ ପ୍ରସାରିତ ହେବା ବି ଦରକାର ।

ବର୍ତ୍ତମାନ ସୁଦ୍ଧା ପ୍ରଧାନ ଭାଷାର ଲିପିମାନଙ୍କର ସଂସ୍କାର କାମ ଶେଷ ହୋଇ ନଥିବାରୁ ଲିପିହୀନ ଭାଷା ପାଇଁ ନୂତନ ଲିପି ପ୍ରଚଳନ ନ କରି ଯେଉଁ ଲିପି ରହିଛି ସେ ଗୁଡ଼କୁ ଲିପିହୀନ ଭାଷାର ଧ୍ୱନି ଓ ଅନ୍ୟାନ୍ୟ ଆବଶ୍ୟକତା ପୂରଣ ପାଇଁ ଯେପରି, ଧ୍ୱନିର କମ ବେଶୀ ତାର-ତମ୍ୟ ଦର୍ଶାଇବାକୁ, ନାସିକ୍ୟ ଧ୍ୱନିକୁ ଠିକ ଭାବରେ ପ୍ରକାଶ କରିବାକୁ, ଲେଖାରେ କମା, ପୂର୍ଣ୍ଣଚ୍ଛେଦ ଓ ପାରାଗ୍ରାଫ ପ୍ରଭୃତିକୁ ନିୟମ ଅନୁସାରେ ଅନୁସରଣ କରିବାକୁ ଓ ନୂଆ ଧ୍ୱନିର ଲିପି ପାଇଁ ନିର୍ଦ୍ଦିଷ୍ଟ ଲିପିର ଆବ-ଶ୍ୟକୀୟ ସାହାଯ୍ୟ ଓ ସୁଯୋଗ ନେବା ସଙ୍ଗେ ସଙ୍ଗେ ପ୍ରଧାନ ଭାଷାର ଲିପିରେ ସୀମିତ ଆବଶ୍ୟକୀୟ ପରିବର୍ତ୍ତନ କରିବାକୁ ଉଦ୍ୟମ ହେବା ଉଚିତ ।

ଭାରତ ପରି ଏକ ବିକାଶଶୀଳ ରାଷ୍ଟ୍ରର ବହୁ ସମସ୍ୟା ଭିତରେ ନିର-କ୍ଷରତା ଓ ତଜ୍ଜନିତ ଶିକ୍ଷାହୀନତା ଏକ ପ୍ରଧାନ ସମସ୍ୟା । ଏହି ସମସ୍ୟାର ଦୂରୀକରଣ ପାଇଁ ବିଭିନ୍ନ ଚିନ୍ତାଧାରା ଭିତରେ ମାତୃଭାଷା ମାଧ୍ୟମରେ ଶିକ୍ଷାଦାନ ଆରମ୍ଭ କରିବା ପ୍ରସ୍ତାବ ଅନ୍ୟତମ । ଆମର ଏତେଗୁଡ଼ିଏ ମାତୃଭାଷା ଥିଲେ ମଧ୍ୟ ମାତୃଲିପି ବୋଲି ତ କିଛି ନାହିଁ । ତେଣୁ ଲିପି ବିଚାର କଥା ବିଚାର କଲାବେଳେ ନୂତନ ଲିପି ସୃଷ୍ଟି କରିବା ଅପେକ୍ଷା ବରଂ ପ୍ରଚଳିତ ଲିପିର ସାହାଯ୍ୟ ନେବା ବାଞ୍ଛନୀୟ । ଲିପି ସମସ୍ୟାର ସମାଧାନ ଭାଷାରେ ରହିଥିବା ଅଭାବ ଓ ଆବଶ୍ୟକତାକୁ ଆଖି ଆଗରେ ରଖି ଅତି ସାବଧାନତାର ସହିତ କରିବାକୁ ପଡ଼ିବ ଓ ରହିଥିବା ସୀମିତ ସମ୍ବଳ ମଧ୍ୟରେ ସମାଧିତ ବ୍ୟବସ୍ଥାକୁ କାର୍ଯ୍ୟକାରୀ କରିବାକୁ ହେବ ।

—✳—

## ସହାୟକ ଗ୍ରନ୍ଥସୂଚୀ


1. CIIL Adult Literary Series-3
'Literary Methodology'
Ed-by, G. Sambasiva Rao

2- 'Distribution of Languages in India
in States and Union Territories'
Ed.by—Dr. D.P. Pattanaik

୩ । 'ଓଡ଼ିଆ ବିଶ୍ୱନାଗରୀ' (ଉତ୍କଳ ନାଗରୀଲିପି ପରିଷଦ)

୪ । 'ମଣିଷର ଭାଷା'—ଶ୍ରୀ ଗୋଲୋକ ବିହାରୀ ଧଳ

୫ । ଜ୍ଞାନମଣ୍ଡଳ'—ଶ୍ରୀ ବିନୋଦ କାନୁନ୍‌ଗୋ


—⁕—

# ଦ୍ୱିତୀୟ ଭାଷା ଭାବରେ ଓଡ଼ିଆ ଭାଷାର ଅଧ୍ୟୟନ : କେତେକ ବିଚାର

ଭାରତରେ ଦ୍ୱିତୀୟ ଭାଷା ଅଧ୍ୟୟନର ଆବଶ୍ୟକତା ରହିଛି । ଓଡ଼ିଆ ଭାଷାକୁ ଦ୍ୱିତୀୟ ଭାଷା ଭାବରେ ଆଲୋଚନା କରିବାକୁ ଯିବା ପୂର୍ବରୁ ଦ୍ୱିତୀୟ ଭାଷା ବିଷୟରେ କିଛି କହିବା ପ୍ରୟୋଜନ । ଦ୍ୱିତୀୟ ଭାଷା କାହାକୁ କୁହାଯିବ । ମାତୃଭାଷା ବ୍ୟତୀତ ଅନ୍ୟ ଯେ କୌଣସି ଗୋଟିଏ ଭାଷା ଶିକ୍ଷାକୁ ଦ୍ୱିତୀୟ ଭାଷା-ଶିକ୍ଷା ବୋଲି କୁହାଯାଇପାରେ । କିନ୍ତୁ ଭାରତରେ ଏକାଧିକ ଭାରତୀୟ ଭାଷା ପ୍ରଚଳନ ହେତୁ ଦ୍ୱିତୀୟ ଭାଷା କହିଲେ ଠିକ୍ କେଉଁ ଭାଷାକୁ ଗ୍ରହଣ କରଯିବ ତାହା ବିଚାର କରିବାର କଥା । ଭାରତୀୟ ସ୍କୁଲ ପାଠ୍ୟକ୍ରମରେ ମାତୃଭାଷା ବ୍ୟତୀତ ଆହୁରି ଦୁଇ ତିନୋଟି ଭାଷା ଶିକ୍ଷା ଦେବାର ବ୍ୟବସ୍ଥା ଅଛି । ଯେପରି ଇଂରାଜୀ, ହିନ୍ଦି ଓ ସଂସ୍କୃତ । ଏଠାରେ ଇଂରାଜୀ ଭାଷାର ସ୍ଥାନ ସ୍ୱତନ୍ତ୍ର । ଏହାକୁ ଦ୍ୱିତୀୟ ଭାଷା ବୋଲି ଆଖ୍ୟା ଦିଆଯାଇପାରେ । କାରଣ ମାତୃଭାଷା ତଳକୁ ଏହି ଭାଷାର ସ୍ଥାନ । ଭାରତରେ ଦ୍ୱିତୀୟଭାଷା ଭାବରେ ଇଂରାଜୀ ଶିକ୍ଷାର ବ୍ୟବସ୍ଥା ମଧ୍ୟ ଅଛି । ଇଂରାଜୀକୁ ଯେତେ ବିରୋଧ କରାଗଲେ ମଧ୍ୟ ଏହାର ପ୍ରାଧାନ୍ୟ ଏ ପର୍ଯ୍ୟନ୍ତ ରହିଛି ଓ ଆହୁରି କିଛିବର୍ଷ ବି ରହିପାରେ । ସେଥିପାଇଁ ଇଂରାଜୀକୁ ଶିକ୍ଷା ଦେବାପାଇ ଆମ ଦେଶରେ ଯେତିକି ଚେଷ୍ଟା ହେଉଛି ତାକୁ ଦ୍ୱିତୀୟ ଭାଷା ଭାବରେ ଶିକ୍ଷାଦେବା ପାଇଁ ଦେଶ ବାହାରେ ତତୋଧିକ ଉଦ୍ୟମ ହେଉଛି ଓ ସେ ଉଦ୍ୟମ ମଧ୍ୟ ସଫଳ ଉଦ୍ୟମ ।

ମାତୃଭାଷା ସହିତ ଅନ୍ୟ ଯେଉଁ ଭାଷାକୁ ଭାଷା ପରିବେଶ ଭିତରେ ଶିଖିବାକୁ ହୁଏ ସେହି ଭାଷା ହିଁ ଦ୍ୱିତୀୟ ଭାଷା । କିନ୍ତୁ ଭାରତରେ ବିଭିନ୍ନ ପ୍ରଦେଶରେ ବିଭିନ୍ନ ଭାଷାର ପ୍ରଚଳନ ଦୃଷ୍ଟିରୁ ଓ ଭାଷା ସମସ୍ୟାର ସମ୍ୟକ ସମାଧାନ ଦୃଷ୍ଟିରୁ ନିଜ ମାତୃଭାଷା ବ୍ୟତୀତ ଅନ୍ୟ ଏକ ପ୍ରାଦେଶିକ

ଭଷା ଅଧ୍ୟୟନକୁ ଦ୍ୱିତୀୟ ଭଷା ଶିକ୍ଷା ଭବରେ ଗ୍ରହଣ କରଯାଉଛି । ଏଇ ଦୃଷ୍ଟି କୋଣରୁ ବିଗ୍ଭର କଲେ ଓଡ଼ଆ ଭଷା ଅନ୍ୟ ଯେ କୌଣସି ପ୍ରଦେଶର ଅନ୍ୟ ଭଷାଭାଷୀ ଲୋକଙ୍କ ପାଇଁ ଏକ ଦ୍ୱିତୀୟ ଭାଷା ।

ଦ୍ୱିତୀୟ ଭାଷା ଶିକ୍ଷା ଦେବାପାଇଁ ଓ ଭାରତର ଅସଂଖ୍ୟ ଲିଖିତ ଓ ଅଲିଖିତ ଭାଷା ଉପରେ ଗବେଷଣା କରିବା ପାଇଁ ମହୀଶୂରସ୍ଥିତ 'କେନ୍ଦ୍ରୀୟ ଭାଷା ସଂସ୍ଥାନ' ଏକମାତ୍ର ଅନୁଷ୍ଠାନ । ଏହି ଅନୁଷ୍ଠାନର ଶାଖା-ଅନୁଷ୍ଠାନମାନଙ୍କରେ ବିଭିନ୍ନ ଭାରତୀୟ ଭାଷାକୁ ଦ୍ୱିତୀୟ ଭାଷା ଭାବରେ ଶିକ୍ଷା ଦେବାର ଉଦ୍ୟମ କରଯାଇଛି । ଭୁବନେଶ୍ୱରସ୍ଥିତ ପୂର୍ବାଞ୍ଚଳ ଭଷାକେନ୍ଦ୍ର ଏହିପରି ଏକ ଶାଖା-ଅନୁଷ୍ଠାନ, ଯେଉଁଠାରେ କି ପୂର୍ବାଞ୍ଚଳର ଭାଷା ଶିକ୍ଷା ଦିଆଯାଇଥାଏ । ଏହି କେନ୍ଦ୍ରରେ ଓଡ଼ଆ, ବଙ୍ଗଳା ଓ ଅସମୀୟା, ଏଇ ତିନୋଟି ଭାଷାକୁ ଦ୍ୱିତୀୟ ଭାଷା ଭାବରେ ଶିକ୍ଷା ଦିଆ ଯାଉଛି ।

ମାତୃଭାଷା ଶିକ୍ଷା ଓ ଦ୍ୱିତୀୟଭାଷା ଶିକ୍ଷାରେ ବିଶେଷ ପାର୍ଥକ୍ୟ ରହିଛି । ଭାଷା କେନ୍ଦ୍ରରେ ଓଡ଼ଆ ଶିକ୍ଷା କରୁଥିବା ଶିକ୍ଷାର୍ଥୀମାନେ ପ୍ରାପ୍ତ ବୟସ୍କ ଅଣଓଡ଼ଆ ଶିକ୍ଷକ । ସେହିପରି ଅଣବଙ୍ଗାଳି ଓ ଅଣ-ଅସମୀୟା ଶିକ୍ଷକମାନେ ଯଥାକ୍ରମେ ବଙ୍ଗଳା ଓ ଅସମୀୟା ଶିକ୍ଷା କରନ୍ତି । ଶିକ୍ଷାଦାନର ସମୟ ଦଶମାସରେ ସୀମିତ ଏବଂ ଏଥିପାଇଁ ସ୍ୱତନ୍ତ୍ର ଶିକ୍ଷା ପଦ୍ଧତି ଅନୁସରଣ କରଯାଏ ।

ସ୍ୱତନ୍ତ୍ର ଶିକ୍ଷା-ପଦ୍ଧତି ଅନୁସରଣ କରିବାର କାରଣ ଓ ଉଦ୍ଦେଶ୍ୟ ବହୁବିଧ । ପୂର୍ବାଞ୍ଚଳୀୟ ଭାଷା ଭାବରେ ଓଡ଼ଆ ବଙ୍ଗଳା ଓ ଅସମୀୟା ସମଗୋତ୍ରୀ ଭାଷା । ତିନୋଟି ଯାକ ଭାଷାର ଅକ୍ଷର ଲେଖା, ଶବ୍ଦ ବ୍ୟବହାର ଓ ବାକ୍ୟ ଗଠନରେ ଅନେକ ସାମଞ୍ଜସ୍ୟ ସୁସ୍ପଷ୍ଟ । ବ୍ୟାକରଣ-ଗତ ସମତା ମଧ୍ୟ ବିଶେଷ ଭାବରେ ଭାଷା-ଶିକ୍ଷାର ଅନୁକୂଳ । ବଙ୍ଗଳା ଓ ଅସମୀୟା ଭାଷାର ଲିପିଗୋଟିଏ । ଓଡ଼ଆ ଭାଷାର ଲିପି ସହିତ ଏ ଦୁଇ ଭାଷାର ଲିପିର ସାମଞ୍ଜସ୍ୟ ଅଛି । ଓଡ଼ଆ ଅକ୍ଷରର ଆକୃତି ଗୋଲ ବା ମୁଣ୍ଡଳାକୃତି ହେଲେ ମଧ୍ୟ ଟିକିଏ ବିଶେଷ ଦୃଷ୍ଟିଦେଇ ଲକ୍ଷ୍ୟକଲେ ଦେଖି-ହେବ ଯେ, ଏ, ଐ, ଓ, ଔ, ଥ, ପରି କେତେକ ସମାନ ଆକାରର ଅକ୍ଷରକୁ ଛାଡ଼ଦେଲେ ଅନ୍ୟସବୁ ଅକ୍ଷରର ଆକାରରେ ସାମାନ୍ୟ ପରିବର୍ତ୍ତନ ସହିତ ଅନେକ ସାଦୃଶ୍ୟ ରହିଛି । ଉଦାହରଣ ସ୍ୱରୂପ ପ୍ରଥମ ଅକ୍ଷର 'ଅ'କୁ

ଲକ୍ଷ୍ୟ କରଯାଇପାରେ । ବଙ୍ଗଳା ବା ଅସମୀୟ୍ର 'ଅ'ରେ ଉପରେ ଗାରକୁ ଲିଭାଇ ଦେଇ ଓଡ଼ଆ 'ଅ'ର କେବଳ ଦୁଇ ମୁଣ୍ଡଳାକୁ 'ଅକ୍ଷରର ବାମ ପଟେ ଯୋଡ଼ଦେଲେ ଆମେ ଓଡ଼ଆ 'ଅ' ଲେଖିପାରୁ । ଯେପରି'ଅ', ସବୁ ଅକ୍ଷର ଗୁଡ଼ିକୁ ଏଇପରି ଅଳ୍ପ ପରିବର୍ତ୍ତନ କରି ଓଡ଼ିଆ ଅକ୍ଷରରେ ପରିଣତ କରଯାଇ ପାରେ । ପ୍ରାପ୍ତ-ବୟସ୍କ ଶିକ୍ଷାର୍ଥୀମାନଙ୍କୁ ଏ ବିଷୟରେ ସଚେତନ କରଇ ଅକ୍ଷର ଲେଖାର ଢଙ୍ଗ ବା ଧାରଟି ଧରଇ ଦେବାକୁ ହୁଏ । ଓଡ଼ିଆ ଅକ୍ଷରର ଆଉ ଏକ ବିଶେଷତ୍ୱ ହେଉଛି, ଅଧିକାଂଶ ଅକ୍ଷରର ଲିଖିତ ଧାର ଅବିଚ୍ଛିନ୍ନ, ଅର୍ଥାତ ଅକ୍ଷରର ଆରମ୍ଭ ବିନ୍ଦୁରୁ ଶେଷ ବିନ୍ଦୁ ପର୍ଯ୍ୟନ୍ତ ହାତକୁ ଅବିଚ୍ଛନ୍ନ ଭାବରେ ଚଳାଇବାକୁ ହୁଏ । ଅକ୍ଷର ଆରମ୍ଭରୁ ଥରେ ଆରମ୍ଭକରି ଅକ୍ଷର ଲେଖା ଶେଷ ପର୍ଯ୍ୟନ୍ତ ହାତ ଉଠାଇ-ବାକୁ ପଡ଼େନାହିଁ । କିନ୍ତୁ ଅନେକ ସମୟରେ ଏପରି ଧାରବାହିକ ଅବିଚ୍ଛନ୍ନ ଢଙ୍ଗଟି ଅଣ-ଭାଷୀଙ୍କ ପକ୍ଷରେ ନିଜ ମାତୃଭାଷାର ପ୍ରଭାବକୁ ଅତିକ୍ରମ କରି ଆୟତ୍ତ କରିବା କଠିନ ହୋଇପଡ଼େ । ଠିକ ଭାବରେ ଅକ୍ଷର ଲେଖା ପ୍ରଣାଳୀ ଅନୁସାରେ ଅକ୍ଷର ଲେଖା ନ ହେବାରୁ ଅଧିକାଂଶ ସମୟରେ ସେମାନଙ୍କ ଅକ୍ଷର ସବୁ ଆମ ଆଖିକୁ ବେଢ଼ଙ୍ଗିଆ ଦେଖାଯାଏ ।

ଅକ୍ଷର ପରି ଶବ୍ଦର ବ୍ୟବହାରରେ ମଧ୍ୟ ଦେଖାଯାଏ ଯେ ସମଗୋତ୍ରୀ ଭାଷାମାନଙ୍କର ସୃଷ୍ଟି ସଂସ୍କୃତରୁ ହୋଇଥିବାରୁ ବ୍ୟବହୃତ ହେଉଥିବା ଅଧିକାଂଶ ଶବ୍ଦ ଓ ଶବ୍ଦର ଅର୍ଥ ସମର୍ଥକ । କେତେକ ଦେଶଜ ଶବ୍ଦ ଓ ଦେଶଜ ଶବ୍ଦରୁ ସୃଷ୍ଟି କଳିତ ଶବ୍ଦ ବ୍ୟବହାରରେ ସାମାନ୍ୟ ତାରତମ୍ୟ ଦ୍ୱାର ପାର୍ଥକ୍ୟ ବା ନୂତନ ଶବ୍ଦର ସୃଷ୍ଟି ହୋଇ-ଥାଏ । ଯେପରି ଓଡ଼ିଆରେ ବ୍ୟବହୃତ ଶବ୍ଦ, 'କଉ' ବଙ୍ଗଳାରେ 'କଇ' ଓ ଅସମୀୟାରେ 'କଓଇ' । ଓଡ଼ିଆରେ ବ୍ୟବହୃତ ଇଂରାଜୀ ଶବ୍ଦ 'ହଷ୍ଟେଲ୍' ବଙ୍ଗଳା ଓ ଅସମୀୟା ଉଭୟରେ 'ହୋଷ୍ଟେଲ୍' । ଏପରି ଅସଂଖ୍ୟ ଶବ୍ଦଙ୍କ ବ୍ୟବହାର ରହିଛି ଏବଂ ପ୍ରତିଦିନ ପ୍ରତ୍ୟେକ ଭାଷାରେ ଆବଶ୍ୟକୀୟ ନୂଆ ନୂଆ ଶବ୍ଦ ସୃଷ୍ଟି ହୋଇ ଭାଷାର ସ୍ୱତନ୍ତ୍ରତା ବୃଦ୍ଧିରେ ସାହାଯ୍ୟ କରୁଛି । ଏଇ ନୂତନ ଶବ୍ଦାବଳୀକୁ ଶିକ୍ଷାର୍ଥୀମାନଙ୍କୁ ଶବ୍ଦାବଳୀ ଲିଷ୍ଟଦ୍ୱାର ପରିଚିତ କରଇ ଦେବାକୁ ହୁଏ ।

ବାକ୍ୟ ଗଠନ ଧାର ଓ ବ୍ୟାକରଣ ଶିକ୍ଷା ଦ୍ୱିତୀୟ ଭାଷା ଶିକ୍ଷାର ଏକ ପ୍ରଧାନ ଅଙ୍ଗ । ବାକ୍ୟ ଗଠନ ଧାର ଶିକ୍ଷା ଦେବାପାଇଁ ନୂତନ ପଦ୍ଧତି ଅନୁସରଣ କରଯାଏ । ମାତୃଭାଷା ଶିକ୍ଷା ଓ ଦ୍ୱିତୀୟ ଭାଷା

ଶିକ୍ଷା ପଦ୍ଧତିରେ ଏହିଠାରେ ପାର୍ଥକ୍ୟ । ମାତୃଭାଷା ଶିକ୍ଷାରେ ଶିଶୁ ଜନ୍ମରୁ ନିଜ ଭାଷାର ପରିବେଶ ଭିତରେ ବଢ଼େ ଓ ସେ ଭାଷା ବ୍ୟବହାର କରିବାକୁ ଆରମ୍ଭ କରିବାବେଳକୁ ଅନେକ ମୌଳିକ-ସରଳ ଓ ଜଟିଳ ବାକ୍ୟ ସେ ଆୟତ୍ତ କରି ସାରିଥାଏ । କିନ୍ତୁ ଦ୍ୱିତୀୟ ଭାଷା ଶିକ୍ଷା ଦେଲା-ବେଳେ ଶିକ୍ଷାର୍ଥୀମାନଙ୍କୁ ସରଳରୁ ଜଟିଳ ଏହି କ୍ରମରେ ବାକ୍ୟ ଗଠନ ଓ ବାକ୍ୟ ପ୍ରୟୋଗ ଏବଂ ବାକ୍ୟ ବ୍ୟବହାର ଶିକ୍ଷା କରିବାକୁ ହୁଏ । ଓଡ଼ିଆ, ବଙ୍ଗଳା ଓ ଅସମୀୟା ଭାଷାରେ ବାକ୍ୟ ଗଠନ ଓ ବାକ୍ୟ ବ୍ୟବହାରରେ ମଧ୍ୟ ଅନେକ ସାମଞ୍ଜସ୍ୟ ରହିଛି । ଭାଷା ତିନୋଟିର ମୂଳ ସଂସ୍କୃତ । ତେଣୁ ସଂସ୍କୃତ ବ୍ୟାକରଣ ଦ୍ୱାରା ଏହା ସମ୍ପୂର୍ଣ୍ଣ ରୂପେ ପ୍ରଭାବିତ । କିନ୍ତୁ ବର୍ତ୍ତମାନର ଆବଶ୍ୟକତା ଦୃଷ୍ଟିରୁ ଓ ଦ୍ୱିତୀୟ ଭାଷା ଶିକ୍ଷାକୁ ସହଜ ଏବଂ ସୁଗମ କରିବାକୁ ବ୍ୟବହାରିକ ବ୍ୟାକରଣ ଅନୁସରଣ କରିବା ସଙ୍ଗେ ସଙ୍ଗେ ବ୍ୟବହାରିକ ବ୍ୟାକରଣ ପୁସ୍ତକ ରଚନା ପାଇଁ ନୂତନ ଉଦ୍ୟମ ହେଉଛି । ଏ ପଦ୍ଧତିରେ ଶିକ୍ଷା ଦେବାପାଇଁ ଦ୍ୱିତୀୟ ଭାଷା-ଶିକ୍ଷାର ସ୍ୱତନ୍ତ୍ର ପୁସ୍ତକ ଲେଖା ଯାଇଛି ।

ଏ ସବୁ ସାମଞ୍ଜସ୍ୟ ଓ ସମତା ଥିବା ସତ୍ତ୍ୱେ ଭାଷା ତିନୋଟି ଯାକ ସ୍ୱୟଂ ସମ୍ପୂର୍ଣ୍ଣ । ତେଣୁ ଏ ଭାଷା ଅଧ୍ୟୟନର ଆବଶ୍ୟକତା । ଏତେ ସମତା ଭିତରେ ଯେଉଁ ବୈଷମ୍ୟଟି ସର୍ବ ପ୍ରଥମେ ଦୃଷ୍ଟି ଗୋଚର ହୁଏ, ତାହା ହେଉଛି ସେମାନଙ୍କର ଉଚ୍ଚାରଣ ଓ କହିବାର ଢଙ୍ଗ । ଓଡ଼ିଆ କଥା, ବଙ୍ଗଳା କଥାଠାରୁ ଯେତିକି ଅଲଗା, ବଙ୍ଗଳା କଥା ଅସମୀୟା କଥାଠାରୁ ମଧ୍ୟ ସେତିକି ଅଲଗା । ବଙ୍ଗଳା ଓ ଅସମୀୟା ଭାଷା ଅନଭିଜ୍ଞ ଜଣେ ଓଡ଼ିଆ ଲୋକ ସେ ଭାଷା ଶୁଣିଲେ କେବଳ ସେଥିରେ କେତୋଟି ନିଜ ଜଣା ଶବ୍ଦ ଜାଣି ପାରିବା ଛଡ଼ା ଭାଷା ଆଦୌ ବୁଝିପାରେ ନାହିଁ । ଏକଥା ଶିକ୍ଷିତ ଓ ଅଶିକ୍ଷିତ ଉଭୟ ଲୋକଙ୍କଠାରେ ସମ୍ଭବ । ତେଣୁ ଜଣେ ଲୋକ ନିଜ ଭାଷାରେ ମାଲିକ ହେଲେ ମଧ୍ୟ ଅନ୍ୟଭାଷାର ସେ ଅତିଥି । ଅନ୍ୟଭାଷାକୁ ଆୟତ୍ତ କରିବାକୁ ବା ସେ ଭାଷାର ମାଲିକ ହେବାକୁ ତାକୁ ଅକ୍ଲାନ୍ତ ପରିଶ୍ରମ କରିବାକୁ ପଡ଼େ । ବିଶେଷ କରି ସେ ସ୍ୱେଚ୍ଛାକୃତ ଭାବରେ ସ୍ୱତଃପ୍ରବୃତ୍ତ ହୋଇ ସୀମିତ ସମୟ ସୀମା ଭିତରେ ଦ୍ୱିତୀୟ ଭାଷା ଆୟତ୍ତ କରିବାକୁ ଆଗ୍ରହୀ ହୁଏ ।

ଭାଷାକୁ ନିର୍ଭୁଲ ଭାବରେ ଉଚ୍ଚାରଣ କରିବା ଏବଂ ନିର୍ଭୁଲ ଭାବରେ କହିବା ପାଇଁ ଶିକ୍ଷାର୍ଥୀକୁ ବାରମ୍ବାର ଅଭ୍ୟାସ କରିବାକୁ ପଡ଼େ । ଏହି

ଉଚ୍ଚାରଣ କରିବାରେ ଓ କହିବାରେ ତାର ମାତୃଭାଷାର ପ୍ରଭାବ ହେଉଛି ପ୍ରଧାନ ଅନ୍ତରାୟ । କିନ୍ତୁ ବାକ୍ୟ ଗଠନ ଓ ବାକ୍ୟ ବ୍ୟବହାରରେ ମାତୃଭାଷା ସହିତ ଇଂରାଜୀ ଭାଷାର ପ୍ରଭାବ ମଧ୍ୟ ଅନ୍ୟ ଏକ ଅନ୍ତରାୟ । ଉଚ୍ଚାରଣକୁ ନିର୍ଭୁଲ କରିବା ପାଇ ଓ କଥନକୁ ସ୍ୱାଭାବିକ କରିବା ପାଇଁ ଏବଂ ଭାଷାରେ ବର୍ଣ୍ଣିତ ବିଷୟ ବସ୍ତୁକୁ ବୋଧଗମ୍ୟ କରିବା ପାଇଁ ଦ୍ୱିତୀୟ ଭାଷାର ଶିକ୍ଷା-ପଦ୍ଧତିକୁ ଚାରି ଭାଗରେ ବିଭକ୍ତ କରାଯାଇଛି । ଶୁଣିବା, କହିବା ଉଚ୍ଚାରଣ କରିବା ପଢିବା ଓ ଲେଖିବା—ଏଇ ଚାରୋଟି ସ୍ତର ମାଧ୍ୟମରେ ଦ୍ୱିତୀୟ ଭାଷା ଅଧ୍ୟୟନ ନିୟନ୍ତ୍ରିତ ।

ଓଡ଼ିଆକୁ ଦ୍ୱିତୀୟ ଭାଷା ଭାବରେ ଅଧ୍ୟୟନ କରିବାକୁ ମଧ୍ୟ ଉପରୋକ୍ତ ପଦ୍ଧତି ଅନୁସରଣ କରିବାକୁ ହୁଏ । କିନ୍ତୁ ଓଡ଼ିଆ ଭାଷା ଅଧ୍ୟୟନ କରିବାକୁ କେବଳ ଓଡ଼ିଆର ସମଗୋତ୍ରୀ ଭାଷା, ଅର୍ଥାତ୍ ବଙ୍ଗଳା ବା ଅସମୀୟା ଭାଷାର ଶିକ୍ଷାର୍ଥୀମାନେ ଯେ ଆସନ୍ତି ତା ନୁହେଁ । ଅନ୍ୟ ଅସମଗୋତ୍ରୀ ଭାଷାର ଶିକ୍ଷାର୍ଥୀମାନେ ମଧ୍ୟ ଆସନ୍ତି । ଯେପରି ଦକ୍ଷିଣ ଭାରତୀୟ ଭାଷା ଗୋଷ୍ଠୀରୁ କନ୍ନଡ଼, ତାମିଲ ତେଲୁଗୁ ଓ ମାଲୟାଲମ ଭାଷାର ଶିକ୍ଷାର୍ଥୀମାନେ ଆସନ୍ତି ଯେପରି ହିନ୍ଦୀ ଭାଷା ଓ ଛତିଶଗଡ଼ୀ ଭାଷା କହୁଥିବା ଶିକ୍ଷାର୍ଥୀମାନେ ଯଥାକ୍ରମେ ବିହାର ଓ ମଧ୍ୟ ପ୍ରଦେଶରୁ ମଧ୍ୟ ଆସନ୍ତି । ସମଗୋତ୍ରୀ ଭାଷୀଙ୍କ ପକ୍ଷରେ ଓଡ଼ିଆ ଭାଷା ଶିକ୍ଷା କରିବା ଯେତିକି କଷ୍ଟକର, ଅସମଗୋତ୍ରୀ ଭାଷାଭାଷୀମାନଙ୍କ ପକ୍ଷରେ ଏହାକୁ ଆୟତ କରିବା ତାହାଠାରୁ ବହୁତ ବେଶୀ କଷ୍ଟସାଧ୍ୟ । ଉଚ୍ଚାରଣ କରିବା, କହିବା ଓ ଲେଖିବା ଏ ସବୁ ସ୍ତରରେ ମାତୃଭାଷାର ପ୍ରଭାବକୁ ଏଡ଼ାଇବା ଏବଂ ମାତୃ ଭାଷାଗତଅଭ୍ୟାସକୁ ଏଡ଼ାଇବା ମଧ୍ୟ ଅତ୍ୟନ୍ତ କଷ୍ଟକର । ସମଗୋତ୍ରୀ ଭାଷାଭାଷୀଙ୍କ ପକ୍ଷରେ ଏହା ଯେପରି ଦୁରୂହ ଅସମଗୋତ୍ରୀଙ୍କ ପକ୍ଷରେ ମଧ୍ୟ ସେହିପରି ଆହୁରି ବେଶୀ ପରି-ମାଣରେ ଦୁରୂହ । ଉଦାହରଣ ସ୍ୱରୂପ ଅସମୀୟା ଭାଷା ଭାଷୀଙ୍କ ପକ୍ଷରେ ସ ଓ ଚ, ନ ଓ ଣ, ସ ଓ ହ, ଳ ଓ ଲ, ଏବଂ ଡ ଓ ର ଉଚ୍ଚାରଣ ନିର୍ଭୁଲ କରିବା ଯେପରି କଷ୍ଟସାଧ୍ୟ ବଙ୍ଗଳା ଭାଷୀଙ୍କ ପକ୍ଷରେ, ସେହିପରି ସବୁ ଶବ୍ଦକୁ ହଳନ୍ତ, ନ ଲଗାଇ ଉଚ୍ଚାରଣ କରିବା ସଙ୍ଗେ ସଙ୍ଗେ ଳ, ଓ ଲ, ଏବଂ ଡ ଓ ର, ନ ଓ ଣ' ମଧ୍ୟରେ ପାର୍ଥକ୍ୟ ରଖି ଉଚ୍ଚାରଣ ନିର୍ଭୁଲ କରିବା ମଧ୍ୟ ସେହିପରି କଷ୍ଟକର ବୋଧହୁଏ । ଅସମଗୋତ୍ରୀ ଭାଷା-ଭାଷୀଙ୍କ ପାଇଁ ଓଡ଼ିଆକୁ ଦ୍ୱିତୀୟ ଭାଷା ଭାବରେ ଅଧ୍ୟୟନ କରିବା ସମୟରେ ସମ୍ପୂର୍ଣ୍ଣ ରୂପେ ଏକ ବିଦେଶୀ ଭାଷା ଶିକ୍ଷା କରିବା ପରି

ବୋଧହୁଏ । କାରଣ ଉଚ୍ଚାରଣ କରିବା, ଅକ୍ଷର ଲେଖିବା ଓ ଶବ୍ଦ ଆହରଣ କରିବା ଏବଂ ବାକ୍ୟ ଗଠନ ପ୍ରୟୋଗ ସବୁ ସେମାନଙ୍କ ପାଇଁ ସମ୍ପୂର୍ଣ୍ଣ ନୂତନ । କିନ୍ତୁ ଓଡ଼ିଆ ଭାଷାର ଉଚ୍ଚାରଣରେ ଅକ୍ଷର ଓ ଉଚ୍ଚାରଣ ମଧ୍ୟରେ ବିଶେଷ ପାର୍ଥକ୍ୟ ଥିବାରୁ ଏହା ଅନ୍ୟ ଭାଷା ତୁଳନାରେ ଅଧ୍ୟୟନ କରିବା ସହଜ । ଏ ଭାଷାର ପ୍ରତି ଅକ୍ଷରର ଉଚ୍ଚାରଣ ସହିତ ଶବ୍ଦରେ ବ୍ୟବହୃତ ଅକ୍ଷରର ଉଚ୍ଚାରଣ ସମାନ । ପ୍ରତି ଅକ୍ଷରର ଉଚ୍ଚାରଣ ସ୍ପଷ୍ଟ ଓ ଧ୍ୱନିଯୁକ୍ତ । ତେଣୁ ଉଚ୍ଚାରଣ ଶିକ୍ଷାବେଳେ ଅକ୍ଷରର ଧ୍ୱନି ଗୁଡ଼ିକୁ ନିର୍ଭୁଲ ଭାବରେ ଉଚ୍ଚାରଣ କରିବାକୁ ଶିକ୍ଷା ଦେଇ ପାରିଲେ ମାତୃଭାଷାର ପ୍ରଭାବକୁ ଅନେକାଂଶରେ ଅତିକ୍ରମ କରିହୁଏ । ଉଚ୍ଚାରଣ-ଅଭ୍ୟାସ ପାଇଁ ଆଧୁନିକ ଭାଷା-ବିଜ୍ଞାନାଗାରର ବ୍ୟବହାର ଏକ ଉପଯୋଗୀ ମାଧ୍ୟମ ।

ଦ୍ୱିତୀୟ ଭାଷା ଅଧ୍ୟୟନର ଇତିହାସ ଆମ ଭାରତରେ ଖୁବ୍ ବେଶୀ ଦିନର ନୁହେଁ । ଓଡ଼ିଶାରେ ତ ଓଡ଼ିଆ ଭାଷାକୁ ଦ୍ୱିତୀୟ ଭାଷା ଭାବରେ ଶିକ୍ଷା ଦେବାର ବ୍ୟବସ୍ଥା, ଅନ୍ୟ ଭାରତୀୟ ଭାଷାମାନଙ୍କ ପରି, ମାତ୍ର କିଛି ବର୍ଷର ପ୍ରଚେଷ୍ଟା । ଏହା ମଧ୍ୟ ଏଇ ଏକମାତ୍ର ଅନୁଷ୍ଠାନ ଭାରତୀୟ ଭାଷା ସଂସ୍ଥାନ ଜରିଆରେ । ଦ୍ୱିତୀୟ ଭାଷା-ଅଧ୍ୟୟନ ଏକ ଆଧୁନିକ ଓ ଅଭିନବ ପରିକଳ୍ପନା ହେଲେ ମଧ୍ୟ ଭାରତୀୟ ଭାଷା-ସମସ୍ୟା କ୍ଷେତ୍ରରେ ଏହାର ପ୍ରାଧାନ୍ୟ ଓ ଆଦର ଦିନକୁ ଦିନ ବଢ଼ୁଥିବା ସୁଖର କଥା ।



# ଭାଷା ପରମ୍ପରା

ଓଡ଼ିଆ ସାହିତ୍ୟରେ ଭାଷା ବିଷୟରେ ଆଲୋଚନା କଲାବେଳେ ଓଡ଼ିଆ ଭାଷାର ମୌଳିକତା ଓ ସ୍ୱାତନ୍ତ୍ରତା ପାଇଁ ସାରଳା ଦାସଙ୍କ ପରେ ଫକୀରମୋହନ ଓ ତାଙ୍କ ପରେ ଗୋପୀନାଥ ମହାନ୍ତିଙ୍କ ସ୍ଥାନ ଦୃଷ୍ଟିକୁ ଆସେ । ସାରଳା ଦାସଙ୍କ ବହୁ ପରେ ଫକୀରମୋହନ ଓ ଗୋପୀନାଥ ମହାନ୍ତି ଆସିଥିଲେ ମଧ୍ୟ ଭାଷା ବ୍ୟବହାରରେ ଏ ତିନିଙ୍କର ମୌଳିକତା ଓ ସେଇ ମୌଳିକତା ଭିତରେ ଏକ ଅବିଚ୍ଛିନ୍ନ କ୍ରମବିକାଶ ଦେଖିବାକୁ ମିଳେ । ଏଇ ଅବିଚ୍ଛିନ୍ନ କ୍ରମବିକାଶରେ ହିଁ ଭାଷାର ଅକୃତ୍ରିମ ଗତିଶୀଳ ଧାରା ବା ପରମ୍ପରାକୁ ଦେଖିହୁଏ । ଭାଷାର ପରମ୍ପରାକୁ ଧରି ରଖିବା ପାଇଁ ଏକ ସଚେତନ ଓ ସ୍ୱାଭାବିକ ପ୍ରୟାସ ଏ ତିନି ଲେଖକଙ୍କର ରଚନାର ବିଶେଷତ୍ୱ । ଏ ସଚେତନ ପ୍ରୟାସ ପ୍ରଥମେ ସାରଳାଙ୍କଠାରୁ ହିଁ ଆରମ୍ଭ । ଏଣୁ ତାଙ୍କୁ ମୂର୍ଖ ବା ଶୁଦ୍ରମୁନି ଭାବରେ ସାରଳା ଦେବୀଙ୍କ ଭକ୍ତ ବୋଲି କହିବା ହୁଏତ ସେଇ ସମୟରେ ସମ୍ଭବ । କିନ୍ତୁ ବର୍ତ୍ତମାନ ସମୟରେ ଏହାକୁ ବିଶ୍ୱାସ କରିବା ବା ଗ୍ରହଣ କରିବା ଭୁଲ ହେବ । ପଣ୍ଡିତ ନୀଳ-କଣ୍ଠ ଦାସ ଯଥାର୍ଥରେ ତାଙ୍କ ବିଷୟରେ କହିଛନ୍ତି, "ଅଦ୍ଭୁତ କ୍ରିୟା ଯୋଡ଼ି ତାଙ୍କଠାରେ ଦେବତ୍ୱ ଆରୋପ ନକଲେ କେହି ମହାପୁରୁଷ ହୁଅନ୍ତି ନାହିଁ । ଭକ୍ତମାନେ ଏଇପରି ଆରୋପ କରି ମହାପୁରୁଷଙ୍କୁ ଭ୍ରଷ୍ଟ କରନ୍ତି । ଭକ୍ତମାନେ ବୁଝନ୍ତି ନାହିଁ ଯେ, ତାଙ୍କ ଚରମ ଆରାଧ୍ୟ ଈଶ୍ୱରଙ୍କର ଅଦ୍ଭୁତ କ୍ରିୟାରେ ମହାପୁରୁଷଙ୍କୁ ଦେଖାଇ ଲୋକଙ୍କୁ ମନେଇବା ଦରକାର ପଡ଼େନାହିଁ ।" (୧)

ଭାଷାକୁ ଜୀବନ ଦେଇ ତାକୁ ଓଡ଼ିଆ ପ୍ରାଣସ୍ପର୍ଶ କରାଇବା କେବଳ ସାରଳାଙ୍କ ପକ୍ଷରେ ପ୍ରଥମେ ସମ୍ଭବ ହୋଇଥିଲା । ଭାବ ଓ ଚିନ୍ତାକୁ ଭାଷାରେ ସହଜ ଓ ସ୍ୱାଭାବିକ ଭାବରେ ଗତିଶୀଳ କରିବାକୁ ସେ ହିଁ ପ୍ରଥମେ ଉଦ୍ୟମ କରିଥିଲେ । ସାରଳାଙ୍କ ଭାଷା ଆଲୋଚନା କରିବାକୁ

ଯାଇ ଏ ବିଷୟରେ ସ୍ଥୂଳ ଭାବରେ ପଣ୍ଡିତ ଗୋପିନାଥ ନନ୍ଦଶର୍ମା କହନ୍ତି, "ସାରଳା ମହାଭାରତ ଗ୍ରନ୍ଥର ଭାଷା ସର୍ବତ୍ର ଅତି ସରଳତା ଓ ପ୍ରାଞ୍ଜଳତାରେ ଏକପ୍ରଖ୍ୟ ଅଟେ । ଯେ କୌଣସି ଅଂଶ ଦେଖିବେ ନିସର୍ଗ ସୌନ୍ଦର୍ଯ୍ୟରେ ମନୋହର ।" (୨) ପୁଣି ତାଙ୍କ ଭାଷା ବିଷୟରେ ପଣ୍ଡିତ ନୀଳକଣ୍ଠଙ୍କ ମତ, 'ସେ ଭାଷା ଖାଲି ଓଡ଼ିଆ ଭାଷା ନୁହେଁ । ସଂସ୍କୃତର ନିପୀଡ଼ନବେଳେ ସେ ହେଉଛି ଓଡ଼ିଆ ପ୍ରାଣର ସ୍ୱାଭାବିକ ସ୍ଫୂର୍ତ୍ତି । ବୈଷ୍ଣବ ଯୁଗରେ, ଭଞ୍ଜ ଯୁଗରେ ତଥା ରାଧାନାଥ—ମଧୁସୂଦନ ଯୁଗରେ ସେ ଭାଷାକୁ ଚିପି, ବୁଡ଼ାଇ ପୁଣି ମାରିଦେବାର ବହୁ ଉଦ୍ୟମ ହୋଇଛି । ସେ ଉଦ୍ୟମର ଫଳ ହେଉନାହିଁ, ରହିବ ନାହିଁ । ଓଡ଼ିଶାରେ ଯଦି ସାହିତ୍ୟିକ ମରିବାର ନୁହନ୍ତି, ସେ ମରିବେ ନାହିଁ । ତାଙ୍କର ଦୂରଦର୍ଶନ ଯେପରି ବ୍ୟାପକ, ସେଇପରି ଚିରନ୍ତନ ।" (୩)

ସାରଳାଙ୍କ ପରେ ଏଇ ବ୍ୟାପକତାର ପ୍ରଭାବ ଓ ପରିଣତିକୁ ଓ ଚିରନ୍ତନତାକୁ ଦେଖିହୁଏ ଫକୀରମୋହନଙ୍କ ଭାଷାରେ ଓ ସେଇ ଭାଷା ଭିତର ଦେଇ ଏକ ସଫଳ ବିକଶିତ ରୂପରେ ଗୋପିନାଥ ମହାନ୍ତିଙ୍କ ଭାଷାରେ । ଭାବର ପ୍ରାଣବନ୍ତ ସ୍ୱତଃସ୍ଫୂର୍ତ୍ତ ପ୍ରକାଶ ସାରଳାଙ୍କଠାରୁ ଆରମ୍ଭ ହୋଇ ଗୋପିନାଥଙ୍କ ପାଖରେ ଯେପରି କି ପୂର୍ଣ୍ଣ ବିକାଶ ଲାଭକରିଛି ଓ ଫକୀର ମୋହନ ଏ ଭାଷା ବିକାଶକୁ ଗୋପିନାଥଙ୍କ ପର୍ଯ୍ୟନ୍ତ ଆଣେଇ ଦେବାକୁ ହିଁ ସାହାଯ୍ୟ କରିଛନ୍ତି । ଭାଷାର ଅକୃତ୍ରିମ ପରିବର୍ତ୍ତନ ଓ ବିକାଶକୁ ସ୍ପଷ୍ଟକରିବା ପାଇଁ ତିନି ଲେଖକଙ୍କର ରଚନାରୁ ତିନୋଟି ନମୁନା ଉଦାହରଣ ସ୍ୱରୂପ ନିଆଯାଇ ଆଲୋଚନା କରାଯାଉଛି ।

୧ । ସାରଳା ଦାସ—

କୁମରର ଅବିନସ୍ତ ଦେଖି କୋପିଲେ ପାଞ୍ଚାଳୀ
ରଗେଣ ତ୍ରିପଣ୍ଡ ବେନି ନେତ୍ରୁ ଅଶ୍ରୁଜଳ ଗଳି ।

ଅଧର କମ୍ପାଇଣ ସେ କ୍ରୋଧେଣ ମାହେଶ୍ୱରୀ
ଘଟଉତ୍କଚ ବଦନ ଚହିଁ ଆଗ୍ୟାଂ ଅବଧାରୀ ।

ଆରେ ଘଟଉତ୍କଚ ତୁ ମାତାର ବୋଲ ପାଇଁ
ମୁକୁଳଂ ନମସ୍କାର ନୋହିଲୁ କିସ ପାଇଁ ।

ମୁହିଂ ମହାଭିଘ୍ନସେନୀ ସୁଶ୍ରେଷ୍ଠି ଦେବଙ୍କର ପାଟବଂଶୀ
ପାଣ୍ଡବେହୁଂ ଶତଚୂଣେ ମୁହିଂ ସେ ଅଟଇ ଗରୁହଂସୀ ।

ବ୍ରାହ୍ମଣ ରଜା ଦ୍ରୋପଦର ମୁହିଂ ଅଟଇ କୁମାରୀ
ମାତା ନିଲକ୍ଷଣୀ ତୋହର ଅଟଇ ଅସୁରୀ

× × ×

ମାତା ପାମେରୀ ବାକ୍ୟେ ମୋତେ ତୁହି ହିଂସା କଲୁ
ବିନାଯୁଦ୍ଧେ ତୋହର ହୃଦେ ବ୍ରଜ ଶକତି ପଡୁ ।

× × ×

ଦ୍ୱାରେଣ ଶୁଣୁଥିଲା ତାହା ହିଡମ୍ବିକୀ ବାଳି
ରଦକୁମାରକୁ ପେଲି ଭିତରେ ପଶିଲ ଡଙ୍ଗାଳୀ

ଲାଜ ଭୟ ସଙ୍କୋଚ ସେ ସମସ୍ତ ତେଜ୍ୟା କରି
କୋପେଣ ଦ୍ରୋପଦୀକି ଆସି ବଚନ ଅବଧାରୀ

ଆଲୋ ଦେଖୁ ଦେଖୁ ପାମେରୀ ଅଟୁ ତୁ ଅସତୀ
ଯେକା ସ୍ତୀରୀକୁ କାହିଁଲେ ଅଛଇ ପଞ୍ଚୁପତି ।

× × ×

ତୁ ତ ଆଣ୍ଟୁକୁଡି ପୁତ୍ର ତୋହର ନାହିଁ
ତୁକୁଇ ଶାପ୍ୟ ଅବା ଦେବଇ ମୁହିଁ କାହିଁ ।

(ଘଟୋତ୍କଚକୁ ସଭାକୁ ଆନୟନ ଓ ହିଡମ୍ବିକୀ ସହିତ ଦ୍ରୌପଦୀର କଳହ,
ସଭାପର୍ବ, ୨ୟ ଖଣ୍ଡ, 'ସାରଳା ମହାଭାରତ ପୃ-୧୯୮ ,୧୯୯)

୨ । ଫକୀର ମୋହନ ସେନାପତି—

"ଆଉ ନାକଫୋଡିଆ ମା ସମ୍ଭାଳି ହୋଇପାରିଲା ନାହିଁ । ହେଁଲେ—ଅଇଂଠା ଖାଇ-ବାଉବୁଲି-ପୋଇଲି ! ମୁ ଟୁଣୀଆଣୀ-ମୁଁ ରେରଣୀ-ମୁଁ ଡାଆଣୀ'—ଏହିପରି ଗର୍ଜନ କରୁ କରୁ ବାହାରକୁ

ଡେଇଁ ପଡ଼ିନ; ପାକୁଆ ପାଟିଟାରୁ ପାଣିଝୁଅ ପରି କଥା ଲହରୀ ଛୁଟିଥାଏ । ଚିତ୍ରକଳା ପ୍ରଥମେ ଚମକି ପଡ଼ ସଟପଟି ଗଲା । ହେଲେ, ସେ [illegible]ଣ ସମ୍ଭାଳି ହେବାର ମାଇକିନିଆ ! ଗର୍ଜନ କରି ବୁଢ଼ୀକି ଆକ୍ରମଣ କଲା । ନାକଫୋଡ଼ଆ ମା'ର କୁଜ ଦେହର ଉପର ଅଧିକ ଢେଙ୍କି ପରି ଉଠ୍‌ପଡ଼ ହେଉଥାଏ । ଡେବିରି ହାତରେ ବାଡ଼, ଖାଇଲା ହାତ ସଞ୍ଚାଳନଟା କୁଲା ପାଛୁଡ଼ା ଏଙ୍ଗରେ ଉପମା ଦିଆଯାଇପାରେ । ମଙ୍ଗଳା ଗଉଳ ରଣପା ଗୋଡ଼ରେ ବାନ୍ଧ ନାଚିଲା ପରି ବାହାର ଗୋଟାକ ଯାକରେ ଧାଇଁ ବୁଲୁ-ଥାଏ । ଏଣେ ଚିତ୍ରକଳା କଡ଼ଜପାଟି କାଉ ଉପରେ ପଡ଼ଲା ପରି ବୁଢ଼ୀ ଉପରେ ଝାମ୍ପି ପଡ଼ୁଥାଏ । × × × ବୁଢ଼ୀଟା ଭାରି ହାଲିଆ ହୋଇ ପଡ଼ିଲା ପରି ଆଉ ସମ୍ଭାଳି ପାରିଲା ନାହିଁ । ଅସଲ କଥା ତାକୁ ଜଣା—ହେଲେ ସାନ୍ତ ସାଙ୍ଗରେ କଥାଟା ଲଗା—ଶୁଣିଲେ ଖପା ହେଇ ଦୁଆର ମନା କରିଦେବେ ପରା । ଦେଉନ୍ତୁ ପଛକେ କଥାଟା ଫିଟେଇ ହାଙ୍କି ଦେଲା—'ହଁ ଲୋ ଅଇଁଠାଖାଇ, ପୋଇଲୀ-ହାତଗୋଡ଼ ଖାଇ-ଗଣ୍ଡୀ-ଏତେ ଯେ ଗହଣା ଦିହରେ ଲଦେଇଛୁ, ତତେ କିଏ ଦେଇଛି ? ନାଜରବାବୁ ଦେଇଛନ୍ତି । ସାନ୍ତଙ୍କ ସାଙ୍ଗରେ ପୀରତୀ— × × ×

ସାନ୍ତାଣୀ ବାରଣ୍ଡାରେ ଗୋଡ଼ ଯୋଡ଼ାକ ଲମ୍ବେଇ ଦେଇ ବସି ମାଇକିନିଆ ଯୋଡ଼ାକର ମାଡ଼ଗୋଳ ଦେଖି ଭାରୀ ଖୁସୀ ହେଉଥିଲେ । ନାକଫୋଡ଼ଆ ମା କଥାଗୁଡ଼ାକ ଯେମନ୍ତ କିଏ ତାଙ୍କ ଦେହରେ ଜଳନ୍ତା ନିଆଁ ଗୁଡ଼ାକ ଢାଳିଦେଲା । × × × 'ହଇଲୋ ପୋଇଲୀ ଅଇଁଠାଖାଇ' କହି ସାନ୍ତାଣୀ ବାରନ୍ଦା ଉପରୁ ତଳକୁ ଖପ୍ କରି ଡେଇଁ ପଡ଼ିଲେ । ତାଙ୍କ ମୁଣ୍ଡରେ ଲୁଗା ନଥିଲା । ଲୁଗା ପିନ୍ଧାରେ ସାନ୍ତାଣୀ ସବୁଦିନେ ଟିକେ ହେଙ୍ଗଳୀ – ପଣତ କାନିଟା ଭୂଇଁରେ ଲୋଟି ଯାଉଥାଏ ।"

(ସମରଭିନୟ, 'ମାମୁଁ', ପୃ-୬୮, ୭୦)

୩ । ଗୋପିନାଥ ମହାନ୍ତି—

"ଗୁରୁବୋଉ ଶୁଣି ଥିଲେ, ଫଁ କରି ଗର୍ଜିଉଠି କହିଲେ, 'କୋଉ କଥାକୁ ଛୁଆଟାକୁ ଉଲୁଗୁଣା ଦେଇ ଝେଟ ଝେଟ କରି ହାଣୁଚ ବା, ସେ ଜିଭ ରହିବଟି ? ସେ ପାଟିରେ ପୋକ ପଡ଼ିବ ନାଇଁ ? ହେ ମହାପ୍ରଭୁ, ହେ ଧର୍ମ ପୁରୁଷ, ତେମେ ସାକ୍ଷୀ ଯୋଉମାନେ କହୁଛନ୍ତି ତାଙ୍କ ପାଟିରେ ପୋକ ପଡ଼ୁ, ପୋକ ପଡ଼ୁ, ପୋକ ପଡ଼ୁ । ହଇଲେ ତୁମେଇଁ କି ଏମିତି କଣ୍ଟାବାଡ଼ରେ ଲୁଗାପକେଇ କଳି କରି ମରିବାକୁ ମନ ହୁଏ, ଏଁ ?'

''ସମସ୍ତେ ସତେକି ଏତିକି କଥାକୁ ଅପେକ୍ଷା କରିଥିଲେ, ଲଗ ଟଲ ଘମାଘୋଟ । ହାଉ ହାଉ ଗର୍ଜନ, କଳି, ଚାରିଆଡୁ ଗୁରୁବୋଉ ଉପରେ ବାଣ ବରଷିଲା । 'ଛି, ସେ ମୁହଁକୁ ଲାଜ ନାହିଁ, ଫେର୍ କଥା କହୁଛନ୍ତି ।'

'ଆଲୋ ହଇଲୋ ବୁଢ଼ିକା, ଆଲୋ ୟେ କ'ଣ କହିବେ, ୟାଙ୍କ ଗଇ କ'ଣ ଆମକୁ ଜଣା ନାଇ ? ସତେଇ ପଣରେ ମାଧେଇ, କ'ଣ ନା ଯା ଚାଲି ଯା ଗାଧେଇ ବେଳେ ବେଳେ । ବିଲେଇ ଆଖିବୁଜି ଦୁଧ ପିଉଚି । କଣ ନା ଲୁଚିଚି ଗୋଡ ଦୋଟି ଦିଶୁଚି ।'

ଆଲୋ ଦାନ୍ତରେ ପଡ ହାଟରେ ଗଡଗଡ଼ାଉଚି, ଛୋପରା ହଉଛନ୍ତି । ବାରିଆଡ଼ ବାଟେ ଡାକିଆଣି ନିତି ନିତି ତାମସା ଲଗେଇ ମାୟାଧୂଳି ପକେଇ ଜୋଇଁ ବରଣ ଚାଲିଚି, ଫେର୍ କୋଉ ମୁହଁରେ ଭଲେଇ ହଉଚ ମ, ଆଉ କୋଉ ମହତଟା ବାକି ରହିଚ !' × × × କୁକୁର ମାଛି ପରି ଗୁରେଇ ଦୁଟେଇ ହେଇ ଲାଗିଗଲେ । ଗୁରୁବୋଉ ଏକୁଟିଆ, ତହିଁରେ ପୁଣି ଦୁର୍ବଳିଆ । ଛବି ଆଖିରୁ ଧାର ଛୁଟିଛି, ଗାଳିର ଭାଷା ତାକୁ ଜଣାନାଇଁ ।

ହଠାତ୍ ସେଇ ଗାଧୁଆ ତୁଠଟା ହିଂସ୍ର ହୋଇ ଉଠିଛି । କିଏ କୂଳରେ ଠିଆହୋଇ ନଇଁପଡ଼ି ଗୋଡ଼ ରଗଡ ହେଉଚି, କିଏ ଛାତିଏ ପାଣିରେ ବୁଡ଼ ଦେଉଛି ଉଠୁଛି, କିଏ ଲୁଗା ହକାଳୁଛି, କିଏ ଅବା ଘେରେଟ ହାଣିବ ବୋଲି ଲାଗିଆସି ପାଖରେ ଠିଆହୋଇଛି । କିନ୍ତୁ ସମସ୍ତଙ୍କ ଠାଣିରେ ସେହି ଏକା ପ୍ରକାର ଉଦ୍ଦେଶ୍ୟ ଫୁଟିଉଠୁଛି, ଯେପରି କି ହିଂସ୍ରକ ଅଜଣା ମଣିଷ ହାତରେ ଛେଳି କାତି, ସାମ୍ନାରେ ନିରୀହ ଗୋଟୁ, ହାଣି ହାଣି ଚେନାଏଁ ଚେନାଏଁ ନେବାକୁ ହିଁ ପଡ଼ିବ ।

ଗୁରୁବୋଉ ଝଅଟି ଝଅଟି କାମସାରି କହିଲା, 'ଚାଲ ଯିବା ଛବି ! ହୁଂକୁ ଥାଅନ୍ତୁବା ଏଗୁଡ଼ାକ । କଥାରେ କହନ୍ତି ନାଇଁ, ହାତୀ ଚାଲେ ବଜାର ନା କୁକୁର ଭୁକେ ହଜାର୍ ।''

'ମାଟି ମଟାଳ', ପୃ-୨୦୪, ୨୦୫)

ସାରଳା ମହାଭାରତର ପଦ୍ୟଭାଷାକୁ ଉପନ୍ୟାସର ଗଦ୍ୟଭାଷା ସହିତ ତୁଳନା କରିବା ଅବାନ୍ତର ମନେହେଲେ ହେଁ ଏହା ଅବାନ୍ତର

ନୁହଁ । କାରଣ ଦେହରେ ବ୍ୟବହୃତ ଭାଷା ଓ ସେଥିରେ ପ୍ରକାଶ କରା-ଯାଉଥିବା ଭାବକୁ ଏକ କ୍ରମ ବିକଶିତ ରୂପରେ ଉପନ୍ୟାସର ଭାଷା ଓ ଭାବରେ ଦେଖିହୁଏ ।

ଉପରୋକ୍ତ ତିନୋଟି ଯାକ ଉଦାହରଣର ବିଷୟବସ୍ତୁ ନାରୀ କଳହ ଓ କଳହର ଅନ୍ତର୍ନିହିତ ମୁଖ୍ୟ ସ୍ୱର 'ଈର୍ଷା' । କିନ୍ତୁ ଏଇ 'ଈର୍ଷା' ଭାବ-ପ୍ରକାଶର ଭଙ୍ଗୀ ପାଞ୍ଚାଳୀ ଓ ହିଡିମ୍ବିକୀଙ୍କ ଭିତରେ ଏକପ୍ରକାର ତ, ନାକଫୋଡ଼ିଆ ମା, ଚିତ୍ରକଳା ଓ ସାଆନ୍ତାଣୀଙ୍କ ଭିତରେ ଆଉ ପ୍ରକାରେ । ପୁଣି ଗୁରବୋଉ ଓ ନଈକୂଳେ ଚିହ୍ନାମାଇପଙ୍କ ଭିତରେ ଅନ୍ୟ ପ୍ରକାରର । ତିନି ସ୍ତରର ଭାଷା ବ୍ୟବହାରକୁ ଲକ୍ଷ୍ୟକଲେ ସ୍ପଷ୍ଟ ବୁଝିହେବ ଯେ ଭାଷାର ବାହ୍ୟଗଠନରେ ଯାହା କୁହାଯାଉଛି ଭାବପ୍ରକାଶରେ ତା ଠାରୁ ଢେର ଅଧିକ କିଛି ସୂଚନା ଦିଆଯାଇଛି ଏବଂ ଏଇ ସୂଚନାଦେବା ଭାବରେ ହିଁ ଭାଷାର କ୍ରମବିକାଶ ଓ ପୂର୍ଣ୍ଣତା ଆଡ଼କୁ ଗତି । ଭାବ ସରଳ ହେଲେ ଭାଷା ସରଳ ଓ ଏହାର ଗତି ଶୀଥିଳ । କିନ୍ତୁ ଭାବ ଜଟିଳ ହେଲେ ଭାଷାର ଗତି କ୍ଷିପ୍ର ଓ ପ୍ରକାଶ ଭଙ୍ଗୀରେ ସୂକ୍ଷ୍ମତା ପରିଦୃଷ୍ଟ ହୁଏ ।

ସାରଳା ମହାଭାରତରେ ପାଞ୍ଚାଳୀ ଓ ହିଡିମ୍ବିକୀଙ୍କ କଳହରେ ପରସ୍ପର ପ୍ରତି ବ୍ୟବହୃତ ଭାଷାରେ କ୍ରୋଧ, ଅହଙ୍କାର ଓ ଈର୍ଷା ପ୍ରଭୃତି ଭାବର ପ୍ରକାଶ ଅତି ସହଜ ଓ ସ୍ୱାଭାବିକ । କ୍ରୋଧ ପ୍ରକାଶ ପାଇଁ 'ରାଗେଣ ତ୍ରିପଣ୍ଡ ବେନିନେତ୍ର', 'କ୍ରୋଧେଣ ଅଧର କମ୍ପାଇଣ', 'କୋପେଣ ଲାଜ ଭୟ ସଂକୋଚ ତେଜ୍ୟାକରି' ପ୍ରଭୃତିରେ କ୍ରୋଧ ସହିତ ଶାରିରୀକ ପରିବର୍ତ୍ତନକୁ ମାଧ୍ୟମ କରାଯାଇଛି । ସେହିପରି ଅହଙ୍କାର ଓ ଈର୍ଷାଭାବ ପ୍ରକାଶ ପାଇଁ ଦ୍ରୌପଦୀଙ୍କ ଭାଷାରେ 'ମୁହିଂ ମହାଜିଷ୍ଣୁସେନୀ', 'ପୁଲେଷ୍ଟି ଦେବଙ୍କର ପାଟବଂଶୀ', 'ପାଣ୍ଡବଙ୍କୁ ଶତେଟୁଣେ ମୁହିଂ ଗରୁହଂସୀ', 'ବ୍ରାହ୍ମଣ ରଜା ଦ୍ରୌପଦର କୁମାରୀ', ମାତା ନିଲକ୍ଷଣୀ ଅସୁରୀ ଅଟଇ' ଏବଂ ହିଡିମ୍ବିକୀଙ୍କ ଭାଷାରେ 'ପାମେରୀ ଅଟୁ ତୁ ଅସତୀ', 'ଯେକା ସ୍ତିରୀକି ପଞ୍ଚୁପତି', 'ତୁ ତ ଆଣ୍ଟୁକୁଡ଼ି' ପ୍ରଭୃତିର ପ୍ରୟୋଗ ଉଲ୍ଲେଖଯୋଗ୍ୟ । ସାରଳାଙ୍କ ଭାଷା ବ୍ୟବହାର ସ୍ୱଚ୍ଛନ୍ଦ ଓ ସ୍ୱାଭାବିକ ହେଲେ ମଧ୍ୟ ଭାଷାବିକାଶର ଏହା ଅପେକ୍ଷା ଅବସ୍ଥା ହୋଇ-ଥିବାରୁ ଭାବପ୍ରକାଶ ଏକ ପ୍ରକାର ସୀମିତ ମନେହୁଏ ।

ଏ ଭାଷା ବ୍ୟବହାରର ଛବି ପାଞ୍ଚ ଶହ ବର୍ଷ ପରେ ଫକୀର ମୋହନଙ୍କ ସମୟକୁ ଭାଷା ଯେତେବେଳେ ବହୁତି ଅଧିକ ସ୍ପଷ୍ଟ ଓ ଅଧିକ

ସକ୍ଷମ ହୋଇପାରିଲା ସେତେବେଳେ ଏହା ଅଧିକ ସୂକ୍ଷ୍ମଭାବ ପ୍ରକାଶ କରିବାକୁ ବ୍ୟବହୃତ ହୋଇପାରିଲା । 'ମାମୁଁ'ର 'ସମରଭିନୟ'ର କଳହ ଏଇ ଦୃଷ୍ଟିରୁ ବିଚାର୍ଯ୍ୟ । ଏଠାରେ କଳହ ଅବଶ୍ୟ କେବଳ ବାକ୍ୟ ବିନିମୟରେ ସୀମିତ ନ ହୋଇ ସମର ଓ ସମର ଜନିତ ଶାରିରୀକ କ୍ରିୟା-ପ୍ରକ୍ରିୟାକୁ ପ୍ରସାରିତ । ତେଣୁ କଳହ ବର୍ଣ୍ଣନାରେ ସୁନ୍ଦର ଅଭିନୟ ସହିତ ଭାଷାର ପ୍ରୟୋଗ ଅଧିକ ମୁକ୍ତ ହୋଇପାରିଛି । ଏ କଳହର ଅନ୍ତର୍ନିହିତ ସ୍ୱର ମଧ୍ୟ ଅସହିଷ୍ଣୁତା ଓ ଈର୍ଷା ଏବଂ ଅସହିଷ୍ଣୁତାରୁ ଜାତ ଉଗ୍ର କ୍ରୋଧ ଭାବ । ଚିତ୍ରକଳାର ନାକଫୋଡଆ ମା ପ୍ରତି ଆଚରଣ ଓ ଏ ଆଚରଣର ପ୍ରଧାନ ଶରବ୍ୟ ସାନ୍ତାଣୀଙ୍କଠାରେ ଏହା ସ୍ପଷ୍ଟ । 'ସମରଭିନୟ'ର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଭାଷାର କ୍ରମମୁକ୍ତ ବ୍ୟବହାରକୁ ଲକ୍ଷ୍ୟ କରାଯାଇ ପାରେ । ନାକଫୋଡଆ ମା ସମ୍ଭାଳି ନପାରି ଗର୍ଜନ କରୁ କରୁ ବାହାରକୁ ଡେଇଁ ପଡ଼ିଲା—"ହେଇ ଲୋ ଅଇଁଠାଖାଇ ବାରବୁଲି—ପୋଇଲୀ । ମୁଁ ଟୁଣିଅଣୀ– ମୁଁ ଖେରଣୀ– ମୁ ଡାଆଣୀ !" କଳହ ଅବସ୍ଥାର ସୁନ୍ଦର ଶାରିରୀକ ବର୍ଣ୍ଣନାରେ ମଧ୍ୟ ଭାଷା ଅଧିକ ମୁକ୍ତ, ଯେପରି—'ନାକ-ଫୋଡଆ ମା'ର କୁଜ ଦେହର ଉପର ଅଧକ ଢେଙ୍କିପରି ଉଠୁପଡ଼' ହେବା, 'ଝାଙ୍କଲା ହାତ ସଞ୍ଚାଳନଟା କୁଳା ପାଛୁଡ଼ା ସଙ୍ଗରେ' ତୁଳନା, ମଙ୍ଗଳା ରଞ୍ଜଳ ଖେଣ୍ଟା ଗୋଡ଼ରେ ବାନ୍ଧ ନାଚିଲା ପରି ବାହାର ଗୋଟାକଯାକ ଧାଇଁ ବୁଲି, ପୁଣି ଚିତ୍ରକଳା କଡ଼କପାଡ଼ି କାଉ ଉପରେ ପଡ଼ଲ ପରି ଚୁଲୀ ଉପରେ ଝାମ୍ପି ପଡ଼ବା, ପ୍ରଭୃତି ଅସଂଖ୍ୟ ବର୍ଣ୍ଣନା ଭିତରୁ କେତୋଟି । ପୁଣି ସାନ୍ତାଣୀଙ୍କୁ ଈର୍ଷା-ସଚେତନ କରାଇବାକୁ ନାକଫୋଡଆ ମା ହାକିଦେଲା 'ହଇଁ ଲୋ ଅଇଠା ଖାଇ ପୋଇଲୀ— ହାତଗୋଡ଼ଖାଇ ଗଣ୍ଡୀ ଏତେ ଯେ ଗହଣା ଦିହରେ ଲଗେଇଛୁ ତତେ କିଏ ଦେଇଛି ? ନାଡର ବାବୁ ଦେଇଛନ୍ତି । ସାନ୍ତଙ୍କ ସଙ୍ଗେ ପୀରତି—ଆଉ ସାନ୍ତ ଦୁନି ଦୁନି ତତେ ପଇସା ଦିଅନ୍ତି ...' ଇଭ ପରିଣାମରେ ସାନ୍ତାଣୀ 'ହଇଲୋ ପୋଇଲୀ ଅଇଁଠାଖାଇ' କହି ବାରଣ୍ଡା ଉପରୁ ତଳକୁ ଡେଇଁ ପଡ଼ଲେ । ତାଙ୍କ ମୁଣ୍ଡରେ ଲୁଗା ନହିଲା । ଲୁଗା ପିନ୍ଧାରେ ସାନ୍ତାଣୀ ସବୁଦିନେ ଟିକେ ହେଙ୍ଗଳୀ '

ସାରଳାଙ୍କ ଭାଷାରେ ଏପରି ମୁକ୍ତ ବିସ୍ତାରିତ ବର୍ଣ୍ଣନାର ଅଭାବ ଦେଖାଯାଏ । କିନ୍ତୁ ଫକୀର ମୋହନଙ୍କ ଭାଷା ବିକଶିତ ରୂପ ହିଁ ଗୋପି-ନାଥ ମହାନ୍ତିଙ୍କ ଭାଷା । ଭାବର ଜଟିଳତର ସୂକ୍ଷ୍ମ ପ୍ରକାଶ ଗୋପିନାଥଙ୍କ

ଭାଷାର ବିଶେଷତ୍ୱ । ସାରଳାଙ୍କ ଭାଷାରେ ଥିବା ଅଭାବ ଫକୀରମୋହନଙ୍କ ବାଟ ଦେଇ ଗୋପିନାଥ ମହାନ୍ତିଙ୍କ ପାଖରେ ପହଞ୍ଚି ଏକ ଉନ୍ନତ ଶୈଳୀରେ ପରିଣତ ହୋଇଛି । ତେଣୁ ତାଙ୍କ ଭାଷାରେ ବୁଝାଯାଉଛି । କଥା ସର୍ବଦା ଜଡ଼ି । ସୀମାକୁ ଟପି ଏକାଧିକ ମନ୍ତବ୍ୟ ଦର୍ଶାଇବାକୁ ସକ୍ଷମ । ଏଣୁ 'ମାଟିମଟାଳ'ରେ ଭାଷାର ଏକ ଅକୃତ୍ରିମ ମୁକ୍ତ ସ୍ୱଚ୍ଛନ୍ଦ ରୂପ ପ୍ରକାଶ ହେବା ସଙ୍ଗେ ସଙ୍ଗେ ମାଟି ସହିତ ସମ୍ପର୍କିତ ଲୋକଙ୍କ କଥାଭାଷାରେ ଏକ ଲାଳିତ୍ୟପୂର୍ଣ୍ଣ ପଦ୍ୟମୟ ସ୍ତରକୁ ଗତି କରିପାରିଛି । ଏହାର ସୁନ୍ଦର ଏକ ଉଦାହରଣ ନଈ ଘାଟର ଗାଧୁଆ ତୁଠରେ ଗାଁ ମାଈପଙ୍କ କଳହରେ ବର୍ଣ୍ଣିତ । ଗାଁ ମାଈପଙ୍କ କଳିରେ କଥାଗୁଡ଼ିକ ଯେପରି ପଦକୁ ପଦ ପଡ଼ ନଈ ସ୍ରୋତ ପରି ପ୍ରବାହିତ ଆଉ ସେଇ ସ୍ରୋତ ସହିତ ପ୍ରବାହିତ ତାର ଅନ୍ତର୍ନିହିତ ହିଂସ୍ର ସ୍ୱର ଓ ଦଂଶନ ଏବଂ ପ୍ରତିଦଂଶନ କରିବାର ଉଗ୍ର ମନୋଭାବ । କିନ୍ତୁ ଭାଷାର ବର୍ଣ୍ଣନାରେ ଏ ଉଗ୍ରଭାବ ପ୍ରଚ୍ଛନ୍ନ । ସାରଳା ଦାସ ଓ ଫକୀର ମୋହନଙ୍କ ଭାଷା ସହିତ ଗୋପିନାଥଙ୍କ ଭାଷା ବ୍ୟବହାରରେ ଏହାହିଁ ଏକ ମୁଖ୍ୟ ବିଶେଷତ୍ୱ । ଭାଷାର ଉଗ୍ରତାକୁ ପ୍ରଚ୍ଛନ୍ନରଖି ଭାବର ଉଗ୍ରତାକୁ ପ୍ରକାଶ କରିବାର ଶକ୍ତିଶାଳୀ ଶୈଳୀରେ ଏହା ପରିଣତ ହୋଇଛି । କଥାର ଉତ୍ତର ପ୍ରତ୍ୟୁତ୍ତରରେ ଯେପରି କି ପଦକୁପଦ ଯୋଡ଼ ଗୀତରଚନା କରାଯାଉଛି—'ହଇଲୋ ତୁଣ୍ଡେଇଁକି ଏମିତି କଣ୍ଟା-ବାଡରେ ଲୁଗାପକେଇ କଳିକରି ମରିବାକୁ ମନେହୁଏ', 'ଘମାଘୋଟ ହାଉହାଉ ଗର୍ଜନ', 'ଘରିଆଡ଼ୁ ଗୁନ୍ଦୋଉ ଉପରେ ବାଣ ବର୍ଷିଲା', 'ଛି ସେ ମୁହଁକୁ ଲାଜ ନାହିଁ', 'ଅଲୋ ହଇଲୋ ହୂତିକା, ଆଲୋ, ଯେ କ'ଣ କହିବେ, ସ୍ୱାଙ୍କ ଗଇ କଣ ଆମକୁ ଜଣାନାହିଁ ? ସତେଇ ପଣରେ ମାଧେଇ କଣ ନା ଯା ଚଳିଯା ଟାଣେଇ, ବେଲେ ବେଲେ । ବିଲେଇ ଆଖି ବୁଜି ଦୁଧ ପିଉଚି । କ'ଣ ନା ଲୁଚିଚି ନା ଗୋଡ ହୋଟି ଦିହୁଟି', ପୁଣି 'ହାତୀ ଚଲେ ବଜାର ନା କୁକୁର ଭୁକେ ହଜାର୍' ଇତ୍ୟାଦି ପ୍ରତ୍ୟେକ ଏକ ଏକ ଚମତ୍କାର ଉଦାହରଣ । ଏ ବର୍ଣ୍ଣନାର ଚରମ ପରିଣତି —'ହଠାତ୍ ସେଇ ଗାଧୁଆ ତୁଠଟା ହିଂସ୍ର ହୋଇ ଉଠିଛି । କିଏ କୂଳରେ ଠିଆ ହୋଇ ନଈ ପଡ଼ ଟୋଡ ଟେଡ଼ ହେଉଛି, କିଏ ଛାତିଏ ପାଣିରେ ବୁଡ଼ ଦେଉଛି ଉଠୁଚି, କିଏ ଲୁଗା ହକାଳୁଛି, କିଏ ଅବା ଟେଟ ହାଣିବ ବୋଲି ଲାଗିଆସି ପାଖରେ ଠିଆହେଇଛି । କିନ୍ତୁ ସମସ୍ତଙ୍କ ଠାଣିରେ ସେହି ଏକପ୍ରକାର ଉଦ୍ଦେଶ୍ୟ ଫୁଟିଉଠୁଛି, ଯେପରି କି ହିଂସ୍ରକ ଅରଣା ମଣିଷ, ହାତରେ ଛେଲା କାଡି, ସାମ୍ନାରେ ନିରୀହ ଗୋରୁ ହାଣି ହାଣି ଟେନାଏଁ ଟେନାଏଁ ନେବାକୁ ହିଁ ପଡ଼ିବ ।"

ତିନି ଉଦାହରଣକୁ ଏକତ୍ର ଆଖି ଆଗରେ ରଖିଲେ ବୁଝିହେବ ଯେ ସାରଳା ଦାସଙ୍କ 'ପାମେରୀ', 'ଅସୁରୀ', 'ନିଲକ୍ଷଣୀ', 'ଅସତୀ', 'ଆଣ୍ଠୁ-କୁଡ଼ି' ପ୍ରଭୃତି ଫକୀର ମୋହନଙ୍କଠାରେ 'ଅଇଁଠାଖାଇ', 'ବାଉବୁଲି', 'ପୋଇଲି', 'ଟୁଣୀଆଣୀ', 'ଘୋରଣୀ' 'ଡ଼ାଆଣୀ', 'ହାତଗୋଡ଼ ଖାଇ', 'ଛଣ୍ଡୀ' । ପୁଣି ଏସବୁ ଗୋପିନାଥଙ୍କ ପାଖରେ କ୍ରମବିକଶିତ ରୂପରେ ହୋଇଛନ୍ତି 'କଣ୍ଟାବାଡରେ ଲୁଗା ପକେଇ କଳିକଲାବାଲା', 'ମୁହକୁ ଲାଜ ନଥିବା ଲୋକ', 'ଦୁତିକା' ଏବଂ 'ନିତି ନିତି ତାମସା ଲଗେଇ ମାୟାଧୁଳି ପକେଇ ଭୋଇଁ ବଟଣ କରିବା ଲୋକ' ଓ ଅହୁରି କେତେ କିଏ । ସାରଳାଙ୍କ ଭଷାରେ ବର୍ଣ୍ଣିତ ରାଗ, କ୍ରୋଧ, ଅହଙ୍କାର, ନିଲଜ ପଣିଆ ଓ ଈର୍ଷା ଫକୀରମୋହନଙ୍କ ଠାରେ ସମଗ୍ର ଅଭିନୟ ରୂପ ନେଇ 'ଭେଙ୍କ ପରି ଉଠ୍‌ପଡ଼୍', କୁଲା ପାଛୁଡ଼ା', 'କଡ଼ଳପାତି କାଉ ଉପରେ ପଡ଼ିବା', 'ସାନ୍ତଙ୍କ ସାଙ୍ଗରେ ପୀରତି'ରେ ପ୍ରକାଶିତ ହୋଇ ଗୋପିନାଥଙ୍କଠାରେ ଯେପରି ଶୀର୍ଷସ୍ଥାନରେ ପହଞ୍ଚିଛି । ଈର୍ଷା ଓ ଅସହିଷ୍ଣୁତା ଚରମ ହିଂସ୍ରତାରେହିଁ ପରିବର୍ତ୍ତିତ । ଏଣୁ ଗୋପିନାଥଙ୍କ ବର୍ଣ୍ଣନାରେ ତା ହୋଇଛି 'ହିଂସ୍ର ଗାଧୁଆ ତୁଠ', ସେଠାରେ ସମସ୍ତେ ହିଂସ୍ରକ ଅରଣା ମଣିଷ ହାତରେ ଛେଲାକାଠି, ସାମ୍ନାରେ ନିରୀହ ଗୋରୁ, ହାଣି ହାଣି ଚେନାଏ ଚେନାଏ ନେବାକୁ ହି ପଡ଼ିବ ।

ଏ ବର୍ଣ୍ଣନାରେ ସାରଳା ଦାସ ଅଛନ୍ତି, ଫକୀର ମୋହନ ବି ଅଛନ୍ତି । ଯଦି ସାରଳା ଦାସ ନଥାନ୍ତେ ଫକୀର ମୋହନ ସୃଷ୍ଟି ହୋଇନଥାନ୍ତେ ଓ ଗୋପୀନାଥ ମହାନ୍ତି ବି ନଥାନ୍ତେ । ସାରଳା ଦାସ ଓ ଫକୀର ମୋହନ ଓଡ଼ିଆ ଭାଷାର ମୌଳିକତାକୁ ରକ୍ଷା କରିବାକୁ ସଚେତନ ଚେଷ୍ଟା କରି ନଥିଲେ ବୋଧେ ଗୋପିନାଥଙ୍କ ଭଷା ସୃଷ୍ଟି ହେବାକୁ ଅହୁରି ଅଧିକ ସମୟ ଲାଗିଥାନ୍ତା । ଭଷାର ଅକୃତ୍ରିମ ସାବଲୀଳ, ସହଜ ପ୍ରକାଶ ହିଁ ଓଡ଼ିଆ ଭଷାର ପରମ୍ପରା ଓ ଏ ତିନି ଲେଖକଙ୍କର ଏହାହିଁ ପ୍ରଧାନ ବିଶେଷତ୍ୱ । ପଣ୍ଡିତ ନୀଳକଣ୍ଠଙ୍କ ତୀକ୍ଷ୍ଣ ଦୃଷ୍ଟି ଓଡ଼ିଆ ଭାଷାର ଏଇ ପରମ୍ପରାକୁ ଠିକ ଧରି ପାରିଥିଲା ଓ ହେଇଥିପାଇଁ ସେ କହିଥିଲେ, "ସାରଳା ଦାସଂକ ବେଳେ ଓଡ଼ିଆର ଯେ ସ୍ୱତନ୍ତ୍ର ଭଷା ଓ ପରମ୍ପରା ବାହାରିଥିଲା, ଚୈତନ୍ୟଂକ କାଳଠାରୁ ମଧ୍ୟ, ରାଧାନାଥଂକ କାଳ ପର୍ଯ୍ୟନ୍ତ ଯେଉଁ ଆକ୍ରମଣ ଆସିଲା, ସେଥିରେ ସେ ପରମ୍ପରା ଓ ସ୍ୱାତନ୍ତ୍ର୍ୟ ଲୁପ୍ତ ହେଲା ବୋଲି କହିଲେ ହୁଏ । ଏହାରି ମଧ୍ୟରେ ହେଉଛନ୍ତି ଫକୀର ମୋହନ ।"

(୨) ଫକୀର ମୋହନଂକ ପରେ ଏହି ପରମ୍ପରର ଧାରକୁ ସଫଳତାର ସହିତ ଆଗେଇ ନେଇଛନ୍ତି ଗୋପିନାଥ ମହାନ୍ତି । ବର୍ତ୍ତମାନ କୁହାଯାଇ-ପାରେ ଯେ ସାରଳା ଓ ଫକୀର ମୋହନଂକ ଚରିତ୍ରମାନେ ଭଷା କହୁ-ଥିବାବେଳେ ଗୋପିନାଥଂକ ଭଷା ନିଜେ ଏକ ଚରିତ୍ରରେ ପରିଣତ ହୋଇଛି ଏବଂ ବର୍ତ୍ତମାନ ଓଡ଼ିଆ ଭଷାର ପରମ୍ପରରେ ଭଷା ହିଁ ଏକ ବଳିଷ୍ଠ, ବିଶିଷ୍ଟ ଚରିତ୍ର । ଏଣୁ ପଣ୍ଡିତ ନୀଳକଣ୍ଠ କହିଥିବା କଥା, ଏବେ ବି ଓଡ଼ିଆ ଲେଖକଂକ ଭିତରେ ଫକୀର ମୋହନଂକ ଉତ୍ତରାଧିକାରୀ ପ୍ରକାଶ ପାଇଛନ୍ତି ବୋଲି ମନେ ହେଉନାହିଁ ' ଏ ଅଯୁକ୍ତିକର ମନେ ହୋଇ-ପାରେ । (୪) ଫକୀର ମୋହନଂକର ଉତ୍ତରାଧିକାରୀ ହେଉଛନ୍ତି ଗୋପି-ନାଥ ମହାନ୍ତି ଏବଂ ଗୋପିନାଥଂକ ଉତ୍ତରାଧିକାରୀ ମଧ୍ୟ କାଳକ୍ରମେ ବାହାରିବେ । କାରଣ ଭଷା ପରମ୍ପରର ଶେଷ ନାହିଁ, ଏହା ଏକ ଅଛିଣ୍ଡା ସ୍ରୋତ ।

## ୧-ସୂଚନା

୧ । ''ସାରଳା ଦାସ'', 'ଓଡ଼ିଆ ଭଷା ଓ ସାହିତ୍ୟ', ନୀଳକଣ୍ଠ ଦାସ

୨ । ' ଭଷା ଓ ସାହିତ୍ୟ'', ଶ୍ରୀ ଭରତ ଦର୍ପଣ', ପଣ୍ଡିତ ଗୋପୀନାଥ ନନ୍ଦଶର୍ମା

୩ । ' ସାରଳା ଦାସ'', 'ଓଡ଼ିଆ ଭଷା ଓ ସାହିତ୍ୟ', ନୀଳକଣ୍ଠ ଦାସ

୪ । ''ଫକୀର ମୋହନ ଓ ଓଡ଼ିଆ ସାହିତ୍ୟ'', ଓଡ଼ିଆ ଭଷା ଓ ସାହିତ୍ୟ', ନୀଳକଣ୍ଠ ଦାସ

୫ । ''ଫକୀର ମୋହନଂକ ଆଦର୍ଶବାଦ'', 'ଓଡ଼ିଆ ଭଷା ଓ ସାହିତ୍ୟ' ନୀଳକଣ୍ଠ ଦାସ

## ସହାୟକ ପୁସ୍ତକ ସୂଚୀ

୧ । 'ଓଡ଼ିଆ ଭଷା ଓ ସାହିତ୍ୟ', ନୀଳକଣ୍ଠ ଦାସ

୨ । 'ଶ୍ରୀ ଭରତ ଦର୍ପଣ', ପଣ୍ଡିତ ଗୋପୀନାଥ ନନ୍ଦଶର୍ମା

୩ । 'ଶାରଳା ମହାଭାରତ', ସଭାପର୍ବ, ୨ୟ ଖଣ୍ଡ

୪ । 'ମାମୁଁ', ଫକୀର ମୋହନ ସେନାପତି

୫ । 'ମାଟି ମଟାଳ', ଶ୍ରୀ ଗୋପିନାଥ ମହାନ୍ତି

୬ । 'ଓଡ଼ିଆ ସାହିତ୍ୟର ଇତିହାସ', ଡଃ ମାୟାଧର ମାନସିଂ

୮ । 'ଶାରଳା ମହାଭାରତ'

୮ । 'There, where Trees flower' ଶ୍ରୀ ଯତିନ୍ଦ୍ର ମୋହନ ମହାନ୍ତି

—*—